# ସୁରଭିକା

ଜୁନ୍ ୧୪, ୧୯୮୪




## ଶିଶୁ ସାହିତ୍ୟ ଏକାଡେମୀ

# ଆପଣଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ !!

ଗୋଟିଏ କନ୍ୟା ଦୁଇଟି ସନ୍ତାନ ପରେ ଗର୍ଭନିରୋଧ ଅସ୍ତ୍ରୋପଚାର କରାଇଲେ ଆପଣ "ସବୁଜ ପତ୍ରିକା"ର ଅଧିକାରୀ ହୋଇପାରିବେ ।

ତା ୧୯ । ୧୦ । ୮୩ଠାରୁ ରାଜ୍ୟରେ ଏହି ଯୋଜନା କାର୍ଯ୍ୟକାରୀ ହୋଇଥିବାରୁ ଏହି ତାରିଖ ପରେ ଅସ୍ତ୍ରୋପଚାର କରାଇଥିବା ଦମ୍ପତିମାନଙ୍କୁ ନିମ୍ନଲିଖିତ ସୁବିଧା ସୁଯୋଗ ଦିଆଯିବ ।

(୧) ରାଜ୍ୟ ସରକାର କିମ୍ବା ଗୃହନିର୍ମାଣ ସଂସ୍ଥା ଦ୍ୱାରା ନିର୍ମିତ ଗୃହଗୁଡ଼ିକ ମଧ୍ୟରୁ ଶତକଡ଼ା ୫ଟି ଗୃହ ଏଭଳି ପରିବାରକୁ ଯୋଗାଇ ଦିଆଯିବ ।

(୨) ଘରଡ଼ିହ ନଥିବା ଏଭଳି ପରିବାରକୁ ପ୍ରଚଳିତ ୪ ଡ଼େସିମିଲ ପରିବର୍ତ୍ତେ ୮ ଡ଼େସିମିଲ ଭୂମି ବିନା ମୂଲ୍ୟରେ ଯୋଗେଇ ଦିଆଯିବ ।

(୩) ନିମ୍ନ ଆୟ ବା ମଧ୍ୟମ ଆୟ ଗୋଷ୍ଠୀର ଲୋକମାନଙ୍କୁ ଦିଆ ଯାଉଥିବା ଗୃହନିର୍ମାଣ ଋଣରୁ ଶତକଡ଼ା ୫ଭାଗ ଏ ଧରଣର ପରିବାର ପାଇଁ ସଂରକ୍ଷିତ ରହିବ ।

(୪) ମେଡ଼ିକାଲ, ଇଞ୍ଜିନିୟରିଂ, ପଲିଟେକ୍‌ନିକ ଓ ଆଇ. ଟି. ଆଇ ପ୍ରଭୃତି ଶିକ୍ଷାନୁଷ୍ଠାନମାନଙ୍କରେ ଶତକଡ଼ା ୫ଭାଗ ସ୍ଥାନ ଏପରି ପରିବାରର ପିଲାଙ୍କ ପାଇଁ ସଂରକ୍ଷିତ ରହିବ ।

(୫) ଏହି ପରିବାରର ସ୍ୱାମୀ କିମ୍ବା ସ୍ତ୍ରୀ ସରକାରୀ କର୍ମଚାରୀ ହୋଇଥିଲେ ତାଙ୍କ ଦରମାରେ ଅଗ୍ରିମ ଦୁଇଟି ଇନ୍‌କ୍ରିମେଣ୍ଟ ପାଇବେ ।

(୬) ସବୁଜ ପତ୍ରିକାଧାରୀଙ୍କ ପାଇଁ ଦଶହଜାର ଟଙ୍କାର ଏକ ବାର୍ଷିକ ଲଟେରୀର ସୁଯୋଗ ଅସ୍ତ୍ରୋପଚାର ହେବାଠାରୁ ପାଞ୍ଚବର୍ଷ ପର୍ଯ୍ୟନ୍ତ ଉନ୍ମୁକ୍ତ ରହିବ ।

ଏ ବିଷୟରେ ଅଧିକ ଜାଣିବାକୁ ଚାହିଁଲେ ନିକଟସ୍ଥ ପରିବାର କଲ୍ୟାଣ କେନ୍ଦ୍ରର ପରାମର୍ଶ ନିଅନ୍ତୁ ।

## ପରିବାର କଲ୍ୟାଣ ନିର୍ଦ୍ଦେଶାଳୟ

ଭୁବନେଶ୍ୱର






# ଶିଶୁ ସାହିତ୍ୟ ଏକାଡେ଼ମୀ, ଓଡ଼ିଶା

**( Children's Literature Academy, Orissa )**

ରେଜିଷ୍ଟ୍ରେସନ ନମ୍ବର–**PR 877-49 of 1982-83**

# କୈଫିୟତ୍

ନାନା ସୁବିଧା–ଅସୁବିଧା ମଧ୍ୟରେ ବହୁ ଆକାଂକ୍ଷିତ ଓଡ଼ିଶା ଶିଶୁ ସାହିତ୍ୟ ଏକାଡ଼େମୀ ଗଠିତ ହେଲା । ତାହାର ବାର୍ଷିକ ଅଧିବେଶନ ନିମନ୍ତେ ଭୁବନେଶ୍ୱରର ତତ୍‌କାଳୀନ ସିଭିଲ୍ ଏସ୍. ଡ଼ି. ଓ. ଙ୍କ ଅଧ୍ୟକ୍ଷତାରେ ଏକ ଅଭ୍ୟର୍ଥନା ସମିତି ଗଠିତ ହୋଇଥିଲା, ମାତ୍ର ଦୁଃଖର ବିଷୟ ଯେ ଉକ୍ତ ସମିତି କର୍ତ୍ତୃକ ବାର୍ଷିକ ଅଧିବେଶନର ଆୟୋଜନ ହୋଇ ପାରିଲା ନାହିଁ ।

ଏହି ଅଧିବେଶନ ଉପଲକ୍ଷେ ସଭ୍ୟ ପରିଚୟ ସମ୍ବଳିତ ଏକ ସ୍ମରଣିକା ପ୍ରକାଶ ପାଇଛି । ଏହାର ବହୁଅଂଶ ବର୍ଷକ ପୂର୍ବରୁ ମୁଦ୍ରିତ ହୋଇ ସାରିଥିଲା । ପରିତାପର ବିଷୟ ଯେ କେତେକ ଆଜୀବନ ଓ ବାର୍ଷିକ ସଭ୍ୟଙ୍କ ପରିଚୟ ଯଥାର୍ଥ ସ୍ଥଳରେ ସ୍ଥାନ ପାଇପାରି ନାହିଁ । ଯେଉଁମାନଙ୍କର ପରିଚୟ ପ୍ରକାଶିତ ହୋଇପାରି ନାହିଁ, ସେମାନେ ହେଲେ–

| | | |
|---|---|---|
| ୧ । | ଶ୍ରୀ ବ୍ରଜେନ୍ଦ୍ର ନାଥ ଗିରି–ପାଳ ବେଗୁନିଆ, ବାଲେଶ୍ୱର | (ଆଜୀବନ) |
| ୨ । | ଶ୍ରୀମତୀ ଅନସୂୟା ଦାଶ–ବାଳକାଟି, ପୁରୀ, | (ବାର୍ଷିକ) |
| ୩ । | ଶ୍ରୀ ନକୁଳ ବେହେରା–ଚିରଡ଼, ଫୁଲବାଣୀ | ” |
| ୪ । | ଶ୍ରୀ ପୂର୍ଣ୍ଣଚନ୍ଦ୍ର ଜେନା–ବିରଞ୍ଚିପୁର, କ୍ଷୀରକୋଣା, ବାଲେଶ୍ୱର | ” |
| ୫ । | ଡାକ୍ତର ପୂର୍ଣ୍ଣଚନ୍ଦ୍ର ମହାନ୍ତି–୧୧ଡ଼ି, ବି.ଜେ.ବି ନଗର, ଭୁବନେଶ୍ୱର | ” |
| ୬ । | ଶ୍ରୀ ବୀରେନ୍ଦ୍ର ନାଥ ମହାନ୍ତି–ଅଲଗୁମ, ସାକ୍ଷୀଗୋପାଳ, ପୁରୀ | ” |
| ୭ । | ଶ୍ରୀ ବୃନ୍ଦାବନ ଦାଶ–ବାଳକାଟି, ପୁରୀ | ” |
| ୮ । | ଶ୍ରୀ ରମେଶ ଚନ୍ଦ୍ର ଭଞ୍ଜ–ଖୋର୍ଦ୍ଧା ଏସ୍. ଟି. ସ୍କୁଲ, ପୁରୀ | ” |
| ୯ । | ଶ୍ରୀ ରାଧାଶ୍ୟାମ ନାୟକ–ବାରକ୍‌ସ, ବ୍ରହ୍ମପୁର | ” |
| ୧୦ । | ଶ୍ରୀ ଶଶିଭୂଷଣ ଦାଶ–ଉତ୍କଳ ଖଦୀ ମଣ୍ଡଳ, ଭୁବନେଶ୍ୱର | ” |
| ୧୧ । | ଶ୍ରୀ ହରେକୃଷ୍ଣ ବେହେରା–ମହାରି, ବାସୁଦେବପୁର, ବାଲେଶ୍ୱର | ” |

ଆନୁଷ୍ଠାନିକ ସଭ୍ୟ :

| | | |
|---|---|---|
| ୧ । | ସୁଧାଂଶୁ ପ୍ରକାଶନ–ଝାଞ୍ଜିରି ମଙ୍ଗଳା, କଟକ | (ବାର୍ଷିକ) |

ମୁଦ୍ରଣ ତ୍ରୁଟି :

୧ । ପୃଷ୍ଠା ୪୩–୧ମ ସ୍ତମ୍ଭ–୯ମ ଧାଡ଼ି–୧୯୮୪ ସ୍ଥାନରେ ୧୯୭୪ ହେବ ।

୨ । ପୃଷ୍ଠା ୪୬–୨ୟ ସ୍ତମ୍ଭ–୧ମ ଧାଡ଼ି–ଆନୁସଙ୍ଗିକ ସ୍ଥାନରେ ଆନୁଷଙ୍ଗିକ ହେବ ।

ଏହି ତ୍ରୁଟି ନିମନ୍ତେ ଆମ୍ଭେ ଦୁଃଖିତ ଏବଂ ପରବର୍ତ୍ତୀ ସ୍ମରଣିକାରେ ଏହି ତ୍ରୁଟି ମାର୍ଜିତ ହେବ ।

ଓଡ଼ିଶା ଶିଶୁ ସାହିତ୍ୟ ଏକାଡ଼େମୀର ଶିଶୁ ସାହିତ୍ୟ ବିକାଶ ପରିକଳ୍ପନା ସଂପର୍କରେ ସାମାନ୍ୟ ସୂଚନା ଦେବା ଆବଶ୍ୟକ ମନେ କରୁଅଛି । ଏକାଡ଼େମୀ ପକ୍ଷରୁ ଏକ 'ସଚିତ୍ର ଶିଶୁ ଅଭିଧାନ' ପ୍ରଣୟନର ପରିକଳ୍ପନା ଆମ କାର୍ଯ୍ୟ ନିର୍ବାହିକା ସମିତିରେ ମୁଁ ଉପସ୍ଥାପନ କରିଥିଲି । ସମିତି ଏହାର ଉପାଦେୟତା ଓ ଅପରିହାର୍ଯ୍ୟ ଆବଶ୍ୟକତା ଉପଲବ୍ଧି କଲେ ମଧ୍ୟ ଏପରି ଏକ ବ୍ୟୟ ବହୁଳ କାର୍ଯ୍ୟକୁ ସମର୍ଥ ନୁହନ୍ତି ବୋଲି ମତ ପ୍ରକାଶ କଲେ । ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ମାନନୀୟ ନିର୍ଦ୍ଦେଶକ ଡକ୍ଟର ଶରତ ଚନ୍ଦ୍ର ଦାଶଙ୍କୁ ଆଲୋଚନା ପ୍ରସଙ୍ଗରେ ଶିଶୁ ସାହିତ୍ୟ ଏକାଡ଼େମୀର ଆଭିମୁଖ୍ୟ ଓ ତା'ର ଶିଶୁ ସାହିତ୍ୟ ବିକାଶ ପରିକଳ୍ପନା ସଂପର୍କରେ ଅବହିତ କରନ୍ତେ ସେ ମହାଶୟ ଶିଶୁ ଅଭିଧାନ ପ୍ରଣୟନକୁ ଅତ୍ୟନ୍ତ ପସନ୍ଦ କଲେ ଏବଂ ତାଙ୍କ ଅନୁଷ୍ଠାନ ପକ୍ଷରୁ ଏହାକୁ କାର୍ଯ୍ୟକାରୀ କଲେ । ସଂପ୍ରତି ଉକ୍ତ ଅଭିଧାନ ପ୍ରକାଶୋନ୍ମୁଖ ଅବସ୍ଥାରେ ଅଛି । ମୋ' ଦ୍ୱାରା ଉପସ୍ଥାପିତ ଏକାଡ଼େମୀର ଏପରି ଏକ ଅଭିନବ ପରିକଳ୍ପନା ଅନ୍ୟ କୌଣସି ଉନ୍ନତ ରାଜ୍ୟରେ କାର୍ଯ୍ୟକାରୀ ହୋଇପାରି ନଥିବା ସ୍ଥଳେ ଆମ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ କର୍ତ୍ତୃକ କାର୍ଯ୍ୟକାରୀ ହୋଇପାରିଥିବାରୁ ମୁଁ ଏବଂ ଆମ ଏକାଡ଼େମୀ ଗର୍ବିତ ।


ନରେନ୍ଦ୍ର ପ୍ରସାଦ ଦାସ
ସାଧାରଣ ସଂପାଦକ
ଶିଶୁ ସାହିତ୍ୟ ଏକାଡ଼େମୀ, ଓଡ଼ିଶା
ଭୁ ବ ନେ ଶ୍ୱ ର

# ଆମ ଶିଶୁ ସାହିତ୍ୟର କେତୋଟି ଦିଗ

ଶ୍ରୀ ରାମକୃଷ୍ଣ ନନ୍ଦ

ଆଜିର ଓଡ଼ିଆ ପିଲା ଯଦି ଜାଣନ୍ତେ ତାଙ୍କ ଅଜା ଓ ଜେଜେ ସେମାନଙ୍କ ପିଲାଦିନେ ସ୍କୁଲର ପାଠ୍ୟପୁସ୍ତକ ଛଡ଼ା ଅନ୍ୟ କିଛି ବହି ବା ପତ୍ରପତ୍ରିକା ପଢ଼ିବାକୁ ପାଉ ନ ଥିଲେ, ତେବେ ସେମାନେ ନିଶ୍ଚୟ କହନ୍ତେ, 'ଆମେ ତ ଭାଗ୍ୟବାନ ପିଲା ରେ ।' ବାସ୍ତବିକ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଅବସ୍ଥା ଏହା ହିଁ ଥିଲା । ମଧୁସୂଦନ ରାଓଙ୍କ ପାଠ୍ୟପୁସ୍ତକ କେତେଖଣ୍ଡ ଥିଲା ପିଲାମାନଙ୍କର ସର୍ବସ୍ୱ । ସେଇଥିରୁ ସେମାନେ ଯାହା କିଛି ଆନନ୍ଦ ପାଉଥିଲେ ଏବଂ ସାହିତ୍ୟଜ୍ଞାନ ଆହରଣ କରୁଥିଲେ ।

ସେହିଦିନଠାରୁ ଆଜି ମଧ୍ୟରେ ପ୍ରାୟ ସତୁରି ଅଶୀ ବର୍ଷର ବ୍ୟବଧାନ । ବହୁ ସୋପାନ ଅତିକ୍ରମ କରି ଓଡ଼ିଆ ଶିଶୁ ସାହିତ୍ୟ ବର୍ତ୍ତମାନ ଏକ ନିର୍ଦ୍ଦିଷ୍ଟ ରୂପ ନେଇଛି ବୋଲି ଯଦିଓ କୁହାଯାଇ ପାରିବ ନାହିଁ (କାରଣ ସାହିତ୍ୟର ଧାରା କେତେବେଳେ ସ୍ଥିର ନୁହେଁ), ଏହା ଆଧୁନିକ ଓଡ଼ିଆ ସାହିତ୍ୟର ଏକ ସ୍ୱତନ୍ତ୍ର ବିଭାଗ ରୂପେ ସ୍ୱୀକୃତ ହୋଇଛି । ଏହାର ଅଗ୍ରଗତିକୁ ତ୍ୱରାନ୍ୱିତ କରିବାରେ ଦୁଇଟି ଘଟଣା ବିଶେଷ ସହାୟକ ହୋଇଛି– ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଭାରତର ସ୍ୱାଧୀନତା ପ୍ରାପ୍ତି । ପାଠ୍ୟପୁସ୍ତକର ଜାତୀୟକରଣ ଏବଂ ଶିକ୍ଷାର ପ୍ରସାର ପରୋକ୍ଷରେ ପୁସ୍ତକ ଶିଳ୍ପର ବିକାଶ ସାଧନ କରିଛି । ଦେଶରେ ସ୍କୁଲ ଓ ପାଠାଗାର ସଂଖ୍ୟା ବଢ଼ିଛି । କେନ୍ଦ୍ର ଓ ରାଜ୍ୟସ୍ତରରେ ପ୍ରତିଯୋଗିତା ଏବଂ ପୁରସ୍କାର ପ୍ରବର୍ତ୍ତନଦ୍ୱାରା ଲେଖକମାନେ ଉତ୍ସାହିତ ହେଉଛନ୍ତି । ବେସରକାରୀ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନମାନେ ମଧ୍ୟ ଶିଶୁ ସାହିତ୍ୟିକମାନଙ୍କୁ ସମ୍ମାନିତ କରୁଛନ୍ତି । ଏହା ଫଳରେ ଅଧିକସଂଖ୍ୟକ ଶିଶୁପୁସ୍ତକ ଓ ପତ୍ରିକା ପ୍ରକାଶନର ପଥ ସୁଗମ ହୋଇଛି ।

ଏ ଶତାବ୍ଦୀର ଦ୍ୱିତୀୟ ଦଶକରେ ପ୍ରହରାଜଙ୍କ 'ଧୋ ରେ ବାୟା ଧୋ' (୧୯୧୪), ନନ୍ଦକିଶୋରଙ୍କ 'ନାନାବାୟା ଗୀତ' (୧୯୧୫) ଓ କବିଚନ୍ଦ୍ର କାଳୀଚରଣଙ୍କ 'କଳାହାଣ୍ଡିଆ ମେଘ' (୧୯୧୭) ପରି ଦୁଇ ଚାରିଖଣ୍ଡି କବିତା ପୁସ୍ତକ ଓଡ଼ିଆ ଶିଶୁ ସାହିତ୍ୟର ଏକମାତ୍ର ପ୍ରତିନିଧିତ୍ୱ କରୁଥିଲେ । ସେଦିନ କିନ୍ତୁ ଆଜି ଆଉ ନାହିଁ । ୧୯୨୦ରେ ଚିନ୍ତାମଣି ଆଚାର୍ଯ୍ୟଙ୍କ ଉଦ୍ୟମରେ ପ୍ରକାଶିତ ଏକମାତ୍ର ଲୋକପ୍ରିୟ ଶିଶୁପତ୍ରିକା 'ପଞ୍ଚାମୃତ'ର ଯୁଗ ଯାଇଛି । ଏବେ ବହି ବଜାରରେ ଶିଶୁପୁସ୍ତକର ଅଭାବ ନାହିଁ । ଶିଶୁ ପତ୍ରିକାର ସଂଖ୍ୟା ମଧ୍ୟ ଯଥେଷ୍ଟ ବଢ଼ିଛି ଏବଂ ବଢ଼ିବାରେ ଲାଗିଛି । ସବୁଠାରୁ ଆନନ୍ଦର ବିଷୟ, ଆଜିକାଲି ବହୁ ଲେଖକ ଶିଶୁ ସାହିତ୍ୟ ଲେଖିବାକୁ ଆଗ୍ରହ ପ୍ରକାଶ କଲେଣି ଏବଂ କେତେକ ସୁସାହିତ୍ୟିକ କେବଳ ଶିଶୁମାନଙ୍କ ଉଦ୍ଦେଶ୍ୟରେ ଲେଖନୀ ଚଳାଇଛନ୍ତି । ଭଲ ହେଉ ବା ମନ୍ଦ ହେଉ, ଶିଶୁ ସାହିତ୍ୟ ପକ୍ଷରେ ଏହା ଯେ ଏକ ଶୁଭ ଲକ୍ଷଣ ଏଥିରେ ସନ୍ଦେହ ନାହିଁ ।

କିନ୍ତୁ ଏତିକିରେ ଆତ୍ମପ୍ରସାଦ ଲାଭ କରି ନିଶ୍ଚିନ୍ତ ରହିଲେ ଅବିବେକିତା ହେବ । ଆମକୁ ମନେ ରଖିବାକୁ ହେବ ସାହିତ୍ୟର ଧାରା ସର୍ବଦା ଗତିଶୀଳ । ଏହା ଦିନକୁ ଦିନ ବିଶୋଧିତ ହୋଇ ସମାଜର ପ୍ରତ୍ୟେକ ସ୍ତରରେ ପହଞ୍ଚିବା ଆବଶ୍ୟକ । ଲେଖକ କେବଳ ଜଣେ ସ୍ରଷ୍ଟା । ତାର ସାହିତ୍ୟକୃତିକୁ ଜନସମାଜରେ ପରିଚିତ କରନ୍ତି ପ୍ରକାଶକଗୋଷ୍ଠୀ । ଉପଯୋଗିତା ଭିତ୍ତିରେ ଏ ଦୁହିଁଙ୍କ ମଧ୍ୟରେ ସମନ୍ୱୟ ନ ରହିଲେ କେବଳ ଲେଖକ ବା ପୁସ୍ତକ ସଂଖ୍ୟା ବୃଦ୍ଧିଦ୍ୱାରା ସାହିତ୍ୟର ବିକାଶ ସାଧିତ ହୋଇପାରେ ନାହିଁ । ଶିଶୁ ସାହିତ୍ୟର ପ୍ରସାର ଦିଗରେ ଲେଖକ, ଚିତ୍ରଶିଳ୍ପୀ, ସଂପାଦକ ଓ ପ୍ରକାଶକ–ଏ

ଗ୍ରନ୍ଥିକଣଙ୍କର ପ୍ରଧାନ ଭୂମିକା ରହିଛି । ଏମାନଙ୍କ ସହଯୋଗରେ ଉତ୍ତମମାନର ପୁସ୍ତକ ପ୍ରସ୍ତୁତ ହେଲେ ଶିଶୁ-ସାହିତ୍ୟ ଅଚିରେ ସମୃଦ୍ଧ ହୋଇପାରିବ ।

୧୯୭୯ରେ ଆନ୍ତର୍ଜାତିକ ଶିଶୁସମ୍ବତ୍ସର ପାଳିତ ହୋଇଥିଲା । ଆଶା କରଯାଉଥିଲା ଓଡ଼ିଆ ଶିଶୁ ସାହିତ୍ୟର ବିକାଶ ପଥରେ ଯେଉଁସବୁ ଅନ୍ତରାୟ ରହିଛି, ତାର ଦୂରୀକରଣ ଦିଗରେ ସଂପୃକ୍ତ ପକ୍ଷମାନେ କିଛି ହେଲେ ଧ୍ୟାନ ଦେବେ । ମାତ୍ର କେବଳ ଲୋକ ଦେଖାଣିଆ ଭାବରେ ଏଠିସେଠି କେତେକ ଶିଶୁମେଳା ଅନୁଷ୍ଠିତ ହେବା ବ୍ୟତୀତ ଶିଶୁସାହିତ୍ୟର ବିକାଶ ଦିଗରେ କିଛି କାମ ହେଲାନାହିଁ । କାର୍ଯ୍ୟକ୍ରମର ବହୁଭାଗ ଗଲା ଭାଷଣରେ ଏବଂ ମନୋ-ରଂଜନରେ ।

ଆମର ଅସୁବିଧାଗୁଡ଼ିକୁ ଅନୁଧ୍ୟାନ କରି ତାର ପ୍ରତିକାର ଦିଗରେ କଣ କରଯାଇପାରେ ତାହା ଚିନ୍ତା କରିବାର ବେଳ ଆସିଛି । ପଡ଼ୋଶୀ ରାଜ୍ୟମାନେ ଏ ଦିଗରେ ତତ୍ପରତା ସହିତ କାର୍ଯ୍ୟ କରୁଛନ୍ତି । ସେମାନଙ୍କ ଅଭିଜ୍ଞତାରୁ ଆମର ଶିକ୍ଷା କରିବା ଉଚିତ । କେତୋଟି ପ୍ରଧାନ ଅଭାବ ଅସୁବିଧା ବିଷୟ ଏଠାରେ ଆଲୋଚନା କରଯାଉଛି ।

## ବିଷୟବସ୍ତୁ :

ପ୍ରତିବର୍ଷ କେତେ ସଂଖ୍ୟକ ଏବଂ କି କି ବିଷୟକ ଶିଶୁପୁସ୍ତକ ପ୍ରକାଶ ପାଉଛି, ତାର ଏକ ମୋଟାମୋଟି ଧାରଣା କରିବାକୁ ଆମର କୌଣସି ସୁବିଧା ନାହିଁ । ସରକାରୀ ଓ ବେସରକାରୀ ସ୍ତରରେ ଏ ଦିଗରେ ଉଦ୍ୟମ ହେବା ବାଞ୍ଛନୀୟ । ଯେତେଦୂର ଜଣାପଡେ, ପୁରାଣଗଳ୍ପ, ଲୋକକଥା, ଜୀବନୀ, ନୀତିଗଳ୍ପ ଏବଂ କବିତା ଆମ ଶିଶୁ ସାହିତ୍ୟର ମୁଖ୍ୟ ବିଷୟବସ୍ତୁ । ଶିଶୁର ଆବେଷ୍ଟନୀରୁ ତାର ସମବୟସ ପିଲା ଏବଂ ସ୍ଥାନୀୟ ବ୍ୟକ୍ତିମାନଙ୍କ ଜୀବନର ଘଟଣାକୁ ନେଇ ଗଳ୍ପ ଲେଖାଯିବା ଉଚିତ । ଏହା ତାର ଅଧିକ ହୃଦୟଗ୍ରାହୀ ହେବ । ଯେଉଁ ଅଳ୍ପ କେତୋଟି ବିଜ୍ଞାନ ବିଷୟକ ପୁସ୍ତକ ଅଛି, ତାହା ଯଥେଷ୍ଟ ନୁହେଁ । ସୁବୋଧ୍ୟ ଗଳ୍ପ ଛଳରେ ଏବଂ ସରଳ ଭାଷାରେ ବୃକ୍ଷଲତା, ଜୀବଜନ୍ତୁ ଓ ଅନ୍ୟାନ୍ୟ ପ୍ରାକୃତିକ ଘଟଣାର ଚିତ୍ର ପିଲାଙ୍କ ଆଗରେ ଉପସ୍ଥାପନ କରଯାଇପାରେ । ଦେଖାଯାଉଛି, ଏ ଦିଗରେ ବିଶ୍ୱବିଦ୍ୟାଳୟର ବଡ଼ ବଡ଼ ଅଧ୍ୟାପକମାନଙ୍କ ଅପେକ୍ଷା ତରୁଣ ଲେଖକମାନଙ୍କ ଲେଖା ଅଧିକ ଫଳପ୍ରଦ ହୁଏ ।

ଆମ ଶିଶୁସାହିତ୍ୟରେ ହାସ୍ୟରସାତ୍ମକ ରଚନାର ଘୋର ଅଭାବ ରହିଛି । ଆଜିର ସମସ୍ୟାବହୁଳ ଯୁଗ ପାଇଁ ଏ ପ୍ରକାର ଲେଖା ଯେତେ ଅଧିକ ହୁଏ ସେତେ ଭଲ । ଆଉ ଏକ ବିଷୟ ହେଲା ସାହସିକ ଅଭିଯାନର କାହାଣୀ । ସାଧାରଣତଃ ୧୨-୧୪ ବର୍ଷ ବୟସର ପିଲାମାନେ ଏ ଜାତୀୟ ଗଳ୍ପ ପଢ଼ିବାକୁ ଭଲ ପାଆନ୍ତି, କାରଣ ସେମାନଙ୍କ ମାନସିକ ପରିବର୍ତ୍ତନ ସଙ୍ଗେ ଏହା ବେଶ ଖାପ ଖାଏ । ମାତ୍ର ଓଡ଼ିଆ ଶିଶୁ ସାହିତ୍ୟରେ ଏ ବିଷୟକ ପୁସ୍ତକ ନାହିଁ କହିଲେ ଚଳେ ।

ଶିଶୁର ମାନସିକ ଅବସ୍ଥା ବିଚାରକୁ ନେଇ ସ୍ଥୂଳତଃ ଦୁଇଟି ବୟଃକ୍ରମିକ ବିଭାଗ କରଯାଇଛି । ନିମ୍ନ ବୟସ ସୀମାର ଶିଶୁଙ୍କ ପାଇଁ ବିଷୟ ଓ ଚିତ୍ରସଂଯୋଜନାରେ ଯେଉଁ ବୈଶିଷ୍ଟ୍ୟ ଆମେ ଇଂରଜୀ ଓ ଅନ୍ୟାନ୍ୟ ଉନ୍ନତ ସାହିତ୍ୟରେ ଦେଖୁ, ତାକୁ ଓଡ଼ିଆରେ ପ୍ରବର୍ତ୍ତନ କରିବା ବର୍ତ୍ତମାନ ଆମ କଳ୍ପନାର ବାହାରେ । ସେ ସ୍ତରର ବହିରେ ଚିତ୍ର ଭାଗକୁ ବିଶେଷ ପ୍ରାଧାନ୍ୟ ଦିଆ ଯାଇଥାଏ । ଆମ ଗାଁ ଗହଳରେ ବହୁ ପିଲା ପ୍ରାଥମିକ ସ୍ତର ଶେଷରେ ପାଠପଢ଼ା ଛାଡ଼ିଦିଅନ୍ତି । ସହରରେ ଏ ବୟସର ଅନେକ ଧନୀ ଘର ପିଲା ପବ୍ଲିକ୍ ସ୍କୁଲରେ ଇଂରଜୀ ପୁସ୍ତକ ପଢ଼ନ୍ତି । ପ୍ରକୃତରେ ଦେଖିଲେ ଆମ ଶିଶୁ ସାହିତ୍ୟର ଅଧିକ ଭାଗ ପ୍ରାୟ ଉପର ସ୍ତର (୯—୧୨) ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ । ତେଣୁ ଏଠାରେ ସେହିମାନଙ୍କ ପୁସ୍ତକ ବିଷୟ ବିଚାର କରଯାଉଛି ।

## ଚିତ୍ରସଜ୍ଜା :

ଶିଶୁମାନଙ୍କ ପାଇଁ ଛବି ନ ଥିବା ପୁସ୍ତକ ଝରକା ନ ଥିବା ଘର ସଙ୍ଗେ ସମାନ । ଏହା ଜାଣୁଥିଲେ ସୁଦ୍ଧା

ଅଧିକାଂଶ ଲେଖକ ଓ ପ୍ରକାଶକ ଖର୍ଚ୍ଚ ବେଶି ହେବା ଭୟରେ ବହିରେ ଅତ୍ୟାବଶ୍ୟକ ଚିତ୍ର ମଧ୍ୟ ଦିଅନ୍ତି ନାହିଁ । ପୁଣି କେବଳ ଛବିଗୁଡ଼ିଏ ଦେଲେ ଯଥେଷ୍ଟ ହେବ ନାହିଁ, ସେଗୁଡ଼ିକ ତାର ମନଛୁଆଁ ହେବା ଆବଶ୍ୟକ । ଦୁଃଖର କଥା, ଶିଶୁପୁସ୍ତକଗୁଡ଼ିକୁ ଛବିଳ କରିବା ଦିଗରେ ଆମର ଯେଉଁ ସୁବିଧା ରହିଛି, ତାହା ପର୍ଯ୍ୟାପ୍ତ ନୁହେଁ । ଅନେକ ଭାବନ୍ତି ପିଲାଙ୍କ ପାଇଁ ଲେଖିବା ଯେପରି ସହଜ, ଶିଶୁ-ପୁସ୍ତକ ପାଇଁ ଚିତ୍ର ଆଙ୍କିବା ମଧ୍ୟ ସେହିପରି ସହଜ । କିନ୍ତୁ ଏହା ଠିକ୍ ନୁହେଁ । ଯେ କୌଣସି ଚିତ୍ରକର ଏହା କରି ପାରିବେ ନାହିଁ । ଏହି ଶିଳ୍ପୀମାନଙ୍କୁ ତାଲିମ ଦେବା-ପାଇଁ କୌଣସି ବ୍ୟବସ୍ଥା ଏଠାରେ ନାହିଁ । ପୁଣି ଆଲୋଚନା ଚକ୍ର ବା କର୍ମଶାଳାମାନଙ୍କରେ ସେମାନେ ପ୍ରାୟ ଯୋଗ ଦିଅନ୍ତି ନାହିଁ । ବେଶୀ ନ ହେଲେ ସୁଦ୍ଧା ଦୁଇଟି ଗୋଟିଏ ରଙ୍ଗରେ, ଅଳ୍ପ ଖର୍ଚ୍ଚରେ ବହିକୁ କିପରି ଆକର୍ଷଣୀୟ କରାଯାଇପାରେ, ତାହା ଚିନ୍ତା କରିବା ଉଚିତ ।

### ସଂପାଦନା :

ଅନେକ ସ୍ଥଳରେ ଦେଖାଯାଏ ଉପଯୁକ୍ତ ସଂପାଦନା ଅଭାବରୁ ଲେଖାର ମାନ ଉନ୍ନତ ହୋଇପାରେନାହିଁ । ଏପରି ହେବାର ନାନା କାରଣ ଅଛି । କେତେକ ସ୍ଥଳରେ ପୁସ୍ତକ ଓ ପତ୍ରିକା ପ୍ରକାଶକଙ୍କର 'ସଂପାଦନା' କାର୍ଯ୍ୟ ପାଇଁ ଆବଶ୍ୟକ ଯୋଗ୍ୟତା ନ ଥାଏ । ଖର୍ଚ୍ଚ ବଢ଼ିବା ଭୟରେ ସେମାନେ ଅନ୍ୟ କୌଣସି ଯୋଗ୍ୟ ସଂପାଦକଙ୍କ ପରାମର୍ଶ ମଧ୍ୟ ନିଅନ୍ତି ନାହିଁ । ବହିଟି କିପରି ଶୀଘ୍ର ପ୍ରକାଶ ପାଇବ ସେଥିପାଇଁ ଲେଖକ ବ୍ୟାକୁଳ ଥିବାରୁ ପ୍ରକାଶକ ଅନିଚ୍ଛୁକ ହେଲେ ମଧ୍ୟ ନିଜ ଖର୍ଚ୍ଚରେ ସେମାନେ ବହିଟିକୁ ଛପାଇ ନିଅନ୍ତି । ପ୍ରାୟ ଅର୍ଦ୍ଧାଧିକ ଶିଶୁ ପୁସ୍ତକର ଏହି ଅବସ୍ଥା । ମୁଦ୍ରଣ ସଜ୍ଜା ବିଷୟରେ ଖୁବ୍ କମ୍ ଲେଖକଙ୍କର ଜ୍ଞାନ ଥାଏ । ତେଣୁ ସଂପାଦନା ଅଭାବରୁ ଆମ ଶିଶୁ ପୁସ୍ତକ ଗୁଡ଼ିକରେ ବହୁ ତ୍ରୁଟି ରହିଯାଏ ।

### ବିକ୍ରୀ ଓ ବଣ୍ଟନ :

ଉଲ୍ଲିଖିତ ଆଲୋଚନାରୁ ସ୍ପଷ୍ଟ ହେବ ଯେ ଶିଶୁ-ପୁସ୍ତକର ପ୍ରସ୍ତୁତି ଅପେକ୍ଷାକୃତ ବ୍ୟୟସାଧ୍ୟ ; ତେଣୁ ପେଶାଦାର ପ୍ରକାଶକମାନେ ଶିଶୁପୁସ୍ତକ ଛାପିବାକୁ ଆଗ୍ରହ ଦେଖାନ୍ତି ନାହିଁ । ବୟସ୍କମାନଙ୍କ ପୁସ୍ତକ ୨୦ ଖଣ୍ଡ ବିକ୍ରୀ ହେଲେ ଯେତେ ଲାଭ ମିଳିବ, ଶିଶୁପୁସ୍ତକ ୧୦୦ ଖଣ୍ଡରୁ ସେତେ ମିଳିବ କି ନା ସନ୍ଦେହ । ବଡ଼ ମଣିଷଙ୍କ ବହିରେ ଚିତ୍ର ଦେବାର ଆବଶ୍ୟକତା ନ ଥାଏ, ମୁଦ୍ରଣ ଦୋଷ ସେତେ ଗୁରୁତର ମନେ କରାଯାଏ ନାହିଁ ; କିନ୍ତୁ ଶିଶୁ-ପୁସ୍ତକରେ ଏହା ଅକ୍ଷମଣୀୟ ବିବେଚିତ ହୁଏ । ଏହି ସବୁ କାରଣରୁ ତାମିଲନାଡ଼ୁର ଶିଶୁପତ୍ରିକା ବିଷୟକ ଏକ ସେମିନାରରେ କେତେକ ସଂପାଦକ ମତ ପ୍ରକାଶ କରିଥିଲେ ଯେ ଚାରି ପାଞ୍ଚ ବର୍ଷ ଶିଶୁ ପତ୍ରିକା ଚଳାଇଲା ପରେ କେତେକ ତାକୁ ଅଧିକ ସହଜ ଏବଂ ଲାଭଜନକ ବୟସ୍କ ପତ୍ରିକାରେ ପରିଣତ କରି ଦେଉଛନ୍ତି ।

ଶିଶୁ ପୁସ୍ତକ ବିକ୍ରୀର ଉଜ୍ଜ୍ୱଳ ସମ୍ଭାବନା ଥିଲେ ସୁଦ୍ଧା ଏହି ସବୁ କାରଣରୁ ତାର ବିକ୍ରୀ ବଢ଼ି ପାରୁନାହିଁ । କ୍ୱଚିତ୍ ବହି ୧ ହଜାରରୁ ଅଧିକ ସଂଖ୍ୟାରେ ଛପାଯାଏ । ଅଧିକ ଛପା ହେଲେ ଖର୍ଚ୍ଚ କମ୍ ପଡ଼ନ୍ତା ଏବଂ ମୂଲ୍ୟ ମଧ୍ୟ କମିଯାନ୍ତା । ଆମ ଲୋକଙ୍କ କ୍ରୟ ଶକ୍ତି ସୀମିତ । ବେଶୀ ମୂଳଧନ ଖଟାଇ ଏକକାଳୀନ ପାଞ୍ଚ ହଜାର ବହି ଛାପିବା ଏବଂ ତାର ବିକ୍ରୟ ବ୍ୟବସ୍ଥା କରିବା କୌଣସି ଲେଖକ ପକ୍ଷରେ ସମ୍ଭବ ନୁହେଁ । ଏଣୁ ପୁସ୍ତକ ବ୍ୟବସାୟୀମାନେ ଯେ ପର୍ଯ୍ୟନ୍ତ ଶିଶୁପୁସ୍ତକ ପ୍ରକାଶନ ଦିଗରେ ଆଗ୍ରହୀ ନ ହୋଇଛନ୍ତି, ଏହାର ଅଗ୍ରଗତିର ଆଶା କ୍ଷୀଣ ।

### ଲେଖକର ସ୍ଥିତି :

ଅଳ୍ପ କେତେଦିନ ହେଲା ଶିଶୁ ସାହିତ୍ୟକୁ ସରକାରୀ ସ୍ୱୀକୃତି ମିଳିଥିଲେ ସୁଦ୍ଧା ଶିଶୁ ସାହିତ୍ୟିକର ସମ୍ମାନ ଅପେକ୍ଷାକୃତ କମ୍ । ବୋଧହୁଏ ସାଧାରଣ ଲୋକଙ୍କର ଧାରଣା, ଶିଶୁମାନଙ୍କ ପାଇଁ ଲେଖିବା ବେଶୀ କିଛି କଷ୍ଟକର ନୁହେଁ । ସେମାନଙ୍କ ଆଖିରେ ଥାଏ ଅଶୀ ବା ଶହେ ପୃଷ୍ଠାର ତିନି ଚାରି ଟଙ୍କିଆ ବହି, ଅନ୍ୟ ପକ୍ଷରେ ୩୦୦ ବା ୪୦୦ ପୃଷ୍ଠାର ପନ୍ଦର ଟଙ୍କିଆ ଉପନ୍ୟାସ ବା

ଆଉ କିଛି । ମୂଲ୍ୟାଙ୍କନର ମାପକାଠି ଯଦି ଏହାହିଁ ହୁଏ, ତେବେ ନିକଟ ଭବିଷ୍ୟତରେ ଶିଶୁ ସାହିତ୍ୟର ଉନ୍ନତି ଆଶା କରିବା ବିଡ଼ମ୍ବନା ।

## ଶେଷ କଥା :

ଏହି ପ୍ରବନ୍ଧରେ ସମସ୍ତ ବିଷୟ ଆଲୋଚନା କରଯାଇ ନଥିଲେ ହେଁ କେତେକ ସାଧାରଣ ଅସୁବିଧା ଏବଂ ଦୋଷା-ଦୋଷର ସୂଚନା ଦିଆଯାଇଛି । ପ୍ରତ୍ୟେକ ଶିଶୁକଲ୍ୟାଣ-କାମୀ ବ୍ୟକ୍ତି ଏ ଗୁଡ଼ିକର ନିରାକରଣ ଦିଗରେ ଯତ୍ନଶୀଳ ହେବା ଉଚିତ । ଶିଶୁ ପୁସ୍ତକର ପ୍ରଦର୍ଶନୀ ଯଥେଷ୍ଟ ନୁହେଁ, ବିକ୍ରୀପାଇଁ ପୁରପଲ୍ଲୀରେ ଏକ ସକ୍ରିୟ ଆୟୋଜନ ହେବା ଆବଶ୍ୟକ । ଗୋଟିଏ ଦୁଇଟି କେନ୍ଦ୍ର ସ୍ଥଳରେ ବିକ୍ରୟ ବ୍ୟବସ୍ଥାକୁ ଆବଦ୍ଧ ନ ରଖି ରାଜ୍ୟର ବିଭିନ୍ନ ସ୍ଥଳରେ ଶିଶୁ ସାହିତ୍ୟର ବିକ୍ରୟ କେନ୍ଦ୍ର ଏବଂ ପୁସ୍ତକାଗାର ଖୋଲଯିବା ଅତ୍ୟନ୍ତ ଜରୁରୀ ମନେହୁଏ । ଉନ୍ନତ ରାଷ୍ଟ୍ରମାନେ ଏହିପରି ବ୍ୟବସ୍ଥା ଗ୍ରହଣ କରିଛନ୍ତି । ସୋଭିଏଟ୍ ରୁଷରେ ଯେଉଁ ୧୭ ହଜାର ବହିଦୋକାନ ଅଛି, ସେ ସମସ୍ତଙ୍କର ଅଲଗା ଶିଶୁ ପୁସ୍ତକ ବିଭାଗ ତ ଅଛି, ତା ଛଡ଼ା ଆଉ କେତେକ ସ୍ୱତନ୍ତ୍ର ବହିଦୋକାନ ଅଛି, ଯେଉଁଠାରେ କେବଳ ଶିଶୁ ପୁସ୍ତକ ହିଁ ବିକ୍ରୀ ହୁଏ ।

ପୃଥିବୀର ପ୍ରାୟ ପ୍ରତ୍ୟେକ ଉନ୍ନତ ଭାଷାରେ ଶିଶୁ-ମାନଙ୍କ ପାଇଁ ସ୍ୱତନ୍ତ୍ର ଜ୍ଞାନକୋଷ, ଅଭିଧାନ ଏବଂ ବୟସାନୁକ୍ରମିକ ଶବ୍ଦ ଶିକ୍ଷା ଗ୍ରନ୍ଥମାନ ପ୍ରସ୍ତୁତ ହୋଇଛି । ଲେଖକ ଓ ପାଠକମାନଙ୍କ ପାଇଁ ଏ ସବୁ ପୁସ୍ତକର ଉପାଦେୟତାକୁ ଅସ୍ୱୀକାର କରଯାଇ ନପାରେ । ଭାରତର ବିଭିନ୍ନ ଅଞ୍ଚଳରେ ଶିଶୁ ସାହିତ୍ୟର ଉନ୍ନତି ଲାଗି ଯେଉଁସବୁ ପଦକ୍ଷେପ ନିଆଯାଉଛି, ତାର ଅନୁଧ୍ୟାନ ଏବଂ ସାମୟିକ ଆଲୋଚନାଚକ୍ର ଓ କର୍ମଶାଳା ମାଧ୍ୟମରେ ଭାବର ଆଦାନ-ପ୍ରଦାନ ଦ୍ୱାରା ଲେଖକ ଓ ଚିତ୍ରଶିଳ୍ପୀ ବିଶେଷ ଉପକୃତ ହେବେ ।

ପରିଶେଷରେ ଏକ ପ୍ରାସଙ୍ଗିକ ପ୍ରସ୍ତାବ ବିଚାର କରଯାଇପାରେ । ଲେଖକମାନଙ୍କର ଆଗ୍ରହ ଏବଂ ପ୍ରତିଷ୍ଠିତ ପ୍ରକାଶକମାନଙ୍କ ଅନିଚ୍ଛାର ସୁଯୋଗ ନେଇ କେତେକ ଛୋଟ ଛୋଟ ଛାପାଖାନା ଦାୟିତ୍ୱହୀନ ଭାବରେ ବହି ଛାପି ଦେଉଥିବାରୁ ମୁଦ୍ରଣରେ ବହୁ ଦୋଷ ରହିଯାଉଛି, ଯାହା କି ଶିଶୁ ପକ୍ଷରେ ଅତ୍ୟନ୍ତ ଅହିତକର । ତେଣୁ ପ୍ରକାଶିତ ଶିଶୁ ପୁସ୍ତକ ଓ ପତ୍ରିକାର ଗଠନମୂଳକ ସମାଲୋଚନା ନିତାନ୍ତ ଆବଶ୍ୟକ । ତା ନ ହେଲେ ଅବାଂଛିତ ପ୍ରକାଶନ ଦ୍ୱାରା ସାହିତ୍ୟ କ୍ଷେତ୍ର ଦୂଷିତ ହୋଇ-ଯିବାର ଆଶଙ୍କା ରହିଛି ।

●

ସଂପାଦକ, 'ସଂସାର'
ତଳ ତେଲେଙ୍ଗାବଜାର
କଟକ

# ଓଡ଼ିଶାରେ 'ଶିଶୁ-ସାହିତ୍ୟ'ର ଗବେଷଣା ପ୍ରସଙ୍ଗ

ଡକ୍ଟର ମନୀନ୍ଦ୍ର ମହାନ୍ତି

ଓଡ଼ିଶାରେ ଶିଶୁ-ସାହିତ୍ୟର ଗବେଷଣା ପ୍ରସଙ୍ଗରେ ଚିନ୍ତା କଲାବେଳେ ଆମକୁ ୧୯୭୨ ମସିହାକୁ ଫେରିଯିବାକୁ ପଡ଼ିବ । ୧୯୭୨ ମସିହାର ଶେଷ ପାଦରେ ଓଡ଼ିଶାରେ ଶିଶୁ ସାହିତ୍ୟ ବିଷୟରେ ଗବେଷଣା କରିବା ପାଇଁ ଚିନ୍ତା କରଗଲା । ପ୍ରଥମେ ପ୍ରଥମେ ଏପରି ଏକ ବିଷୟରେ ଗବେଷଣା କରିବା ଉତ୍ସାହଜନକ ନୁହେଁ ବୋଲି କେତେକ ବୟୋଜ୍ୟେଷ୍ଠ ଶିଶୁ ସାହିତ୍ୟିକ ମତ ଦେଇଥିଲେ । ସେମାନଙ୍କ ମତ—'ଶିଶୁ ସାହିତ୍ୟ' କହିଲେ ଯାହା ବୁଝାଯାଏ, ତାହା ଏବେ ବି ଓଡ଼ିଶା ଭୂମିରେ ଆରମ୍ଭ ହୋଇନାହିଁ । ତେବେ ସେ ଯାହା ହେଉ, ୧୯୭୬ ମସିହାରେ 'ଓଡ଼ିଆ ଶିଶୁ-ସାହିତ୍ୟର ଉନ୍ମେଷ ଓ ବିକାଶ' (ସ୍ୱାଧୀନତା ପର୍ଯ୍ୟନ୍ତ) ଶୀର୍ଷକରେ ଏକ ଗବେଷଣା ନିବନ୍ଧ ରଚିତ ହୋଇଥିଲା ଏବଂ ୧୯୭୭ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପି.ଏଚ.ଡ଼ି, ଡ଼ିଗ୍ରୀ ପାଇଁ ଯୋଗ୍ୟ ବିବେଚିତ ହୋଇଥିଲା । ସର୍ବଭାରତୀୟ ସ୍ତରରେ ଶିଶୁ-ସାହିତ୍ୟ ଗବେଷଣା କ୍ଷେତ୍ରରେ ହିନ୍ଦୀ ଶିଶୁ ସାହିତ୍ୟ ପ୍ରଥମ (ଡକ୍ଟର ହରିକୃଷ୍ଣ ଦେବସରେ ଏବଂ ଡକ୍ଟର ମସ୍ତରାମ କପୁର) ଓ ଓଡ଼ିଆ ଶିଶୁ-ସାହିତ୍ୟ ଦ୍ୱିତୀୟ ।

ଏହି ଗବେଷଣା-ନିବନ୍ଧ ସର୍ବଭାରତୀୟ କ୍ଷେତ୍ରରେ ସ୍ୱତନ୍ତ୍ର । 'ଶିଶୁ ସାହିତ୍ୟ' ହେଉଛି 'ଶିଶୁ-ମନୋବିଜ୍ଞାନ' (Child Psychology)ର ପରିଣାମ । ତେଣୁ ଏହି ଥେସିସ୍‌ଟିରେ ଅଧ୍ୟୟନ ଯେଉଁପରି କରଯାଇ ତାର ମୂଲ୍ୟାୟନ କରଯାଇଛି । ତେଣୁ ଗବେଷଣାତ୍ମକ ନିବନ୍ଧଟିରେ ଉଭୟ ବିଜ୍ଞାନ ଓ କଳାର ଏକତ୍ର ସମାବେଶ ହୋଇଛି । ଏହି ' ନଅଶହ ପୃଷ୍ଠାର ଗବେଷଣା-ନିବନ୍ଧ ପୁସ୍ତକରେ ସ୍ୱାଧୀନତା (୧୯୪୭) ପର୍ଯ୍ୟନ୍ତ ବିସ୍ତୃତ ଭାବରେ ବିଶ୍ଳେଷଣ କରଯାଇ ବହୁ ନୂତନ ତଥ୍ୟ ପ୍ରଦାନ କରଯାଇଛି । ଏହା ଦୁଇଟି ବିଭାଗରେ ବିଭକ୍ତ । ପ୍ରଥମ ବିଭାଗଟିରେ 'ଉନ୍ମେଷ' (Origin) ଏବଂ ଦ୍ୱିତୀୟ ବିଭାଗରେ 'ବିକାଶ' (Development) ପର୍ଯ୍ୟାୟଟି ସନ୍ନିବେଶିତ ହୋଇଛି । 'ପରିଶିଷ୍ଟ' ପର୍ଯ୍ୟାୟରେ ସ୍ୱାଧୀନତାର ଓଡ଼ିଆ ଶିଶୁ-ସାହିତ୍ୟ ସଂପର୍କରେ ଏକ ସୁଦୀର୍ଘ ଆଲୋଚନା ପ୍ରାୟ ଏକଶହ ପୃଷ୍ଠାରେ ସଂଯୁକ୍ତ କରଯାଇଛି । ଓଡ଼ିଆ ଶିଶୁ-ସାହିତ୍ୟ ସଂପର୍କରେ ଏହା ସର୍ବ ପ୍ରଥମ ଗବେଷଣା-ନିବନ୍ଧ । ଏଥିରେ ଶିଶୁ ସାହିତ୍ୟର ବିଭିନ୍ନ ବିଭାଗ ଯଥା—ଗଳ୍ପ, କବିତା, ପ୍ରବନ୍ଧ, ନାଟକ, ଏକାଙ୍କିକା, ଜୀବନୀ ପ୍ରଭୃତି ରଚନାରୀତି (Writing Technique) ସଂପର୍କରେ ନିୟମ ନିର୍ଦ୍ଧାରଣ କରଯାଇଛି । ଓଡ଼ିଆ ଶିଶୁ-ସାହିତ୍ୟର ମୂଳ ଉତ୍ସ ଏବଂ ପରବର୍ତ୍ତୀ କାଳରେ ତା'ର ଐତିହାସିକ ବିକାଶ ସଂପର୍କରେ ଆଲୋଚନା କରଯାଇଛି । ୧୯୭୭ରେ ଓଡ଼ିଆ ଶିଶୁ-ସାହିତ୍ୟ କ୍ଷେତ୍ରରେ ଏପରି ଗବେଷଣା ଅନେକ ଆଶା ସଂଚାର କରିଥିଲା । ଏହି ଗବେଷଣା-ନିବନ୍ଧର ଜନୈକ ପରୀକ୍ଷକ ତଥା ଭାରତର ଜନୈକ ପ୍ରଖ୍ୟାତ ଭାଷାତତ୍ତ୍ୱବିତ୍ ଓ ସାହିତ୍ୟିକ ଡକ୍ଟର ସୁକୁମାର ସେନ୍ ମତ ପ୍ରକାଶ କରି ଲେଖିଛନ୍ତି—

"Dr. Manindra Mohanty's 'Oriya Sisusahitya' is a significant contribution to the history of Oriya literature. I had read the work submitted as a thesis with immense pleasure. × × × child literature belongs to Fundamantal Literature, but it is heartened to find young scholars like

Dr. Mohanty to feel inquisitive in this domain.''

ପୁନଶ୍ଚ, ବଙ୍ଗଳା ଲୋକ-ସାହିତ୍ୟ ଗବେଷଣାର ଆଦି ଗବେଷକ ତଥା ଭାରତର ଜନୈକ ସୁପ୍ରତିଷ୍ଠିତ ଗବେଷକ ପ୍ରଫେସର ଡକ୍ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ ଏହି ଗବେଷଣା ନିବନ୍ଧ ପାଠକରି ମତପ୍ରକାଶ କରିଛନ୍ତି—

''× × × I have been highly impressed by the original character of the work and the wide and the intensive study made by the author. His thesis is a voluminous one depicting all the aspects of the subject studied from not only conventional and available sources, but also from sources so far unpublished and collected by his own personal effort from the practical field. As such this work is of immense value in the study of juvenile literature of India in particular and folk literature in general.''

୧୯୭୮ ମସିହାରେ ବିଳାସପୁରବାସୀ (ମଧ୍ୟପ୍ରଦେଶ) କୁମାରୀ ସ୍ନେହ ମହାପାତ୍ର ରାୟପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ 'ଓଡ଼ିଆ ଔର ହିନ୍ଦୀ ବାଲ୍‌ସାହିତ୍ୟକା ତୁଲନାତ୍ମକ ଅଧ୍ୟୟନ' ଶୀର୍ଷକରେ ଗବେଷଣା-ନିବନ୍ଧ ପ୍ରସ୍ତୁତ କରୁଛନ୍ତି । ଏହା ପ୍ରାୟ ଶେଷ ହେବା ଉପରେ । ୧୯୭୯ ମସିହାଟି ଆନ୍ତର୍ଜାତିକ ଶିଶୁ ସମ୍ବସର ନାମରେ ନାମିତ ହେବାରୁ ବିଶ୍ୱରେ ଶିଶୁ ଶକ୍ତିର ବିକାଶ ପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଗଲା । ଏହି ଅବକାଶରେ ଓଡ଼ିଶାରେ ଶିଶୁ-ସାହିତ୍ୟର ଅଭିବୃଦ୍ଧି ପାଇଁ ଏକ ସୁସ୍ଥ ବାତାବରଣ ସୃଷ୍ଟି ହେଲା । ଶିଶୁମେଳା, ନୂତନ ଶିଶୁ-ପତ୍ରିକାର ଉନ୍ମୋଚନ, ଶିଶୁ ପୁସ୍ତକ ପ୍ରକାଶନ ଆଦି ମଧ୍ୟରେ ବିଶ୍ୱ ଶିଶୁ-ସାହିତ୍ୟ ଏକ ନୂତନ ପାବଚ୍ଛ ସୃଷ୍ଟି କରି ଦେଲା ।

ପରେ ପରେ ଭୁବନେଶ୍ୱରର ଶ୍ରୀ ଶଙ୍କର ନାୟକ 'ଓଡ଼ିଆ ଔର ହିନ୍ଦୀ ବାଲ୍ କଥା ସାହିତ୍ୟ' ଶୀର୍ଷକରେ ଗବେଷଣା ଆରମ୍ଭ କରିଛନ୍ତି । ଅଧ୍ୟାପକ ଶ୍ରୀ ବ୍ରଜକିଶୋରାନନ୍ଦ ଦାସ 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ଶୀର୍ଷକରେ ମଧ୍ୟ ଗବେଷଣା ଆରମ୍ଭ କରିଛନ୍ତି । ଏମାନଙ୍କ ବ୍ୟତୀତ ଦୁଇଜଣ ଅଧ୍ୟାପକ ଏବଂ ଶିଶୁ-ପତ୍ରିକାର ସଂପାଦକ ଗବେଷଣା ଦିଗରେ ମନ ବଳାଇଛନ୍ତି ।

୧୯୭୯ ମସିହାରେ 'ଆନ୍ତର୍ଜାତିକ ଶିଶୁ-ସମ୍ବସର' ଉପଲକ୍ଷେ 'ଓଡ଼ିଆ ଶିଶୁ-ସାହିତ୍ୟ ଗବେଷଣା ପରିଷଦ' (Research Institute of Oriya Children's Literature--RIOCL) ନାମରେ ଏକ ଗବେଷଣା ସଂସ୍ଥା ଗଠିତ ହୋଇଛି । ଏହା ଶିଶୁ ସାହିତ୍ୟର ଗବେଷକ, ସଂପାଦକ ଏବଂ ସାହିତ୍ୟିକ ମାନଙ୍କୁ ନେଇ ଗଠିତ । ଏହାର ଲକ୍ଷ୍ୟ ଓଡ଼ିଆ ଶିଶୁ ସାହିତ୍ୟର ବିକାଶ କରିବା ସଙ୍ଗେ ସଙ୍ଗେ ଗବେଷଣା କାର୍ଯ୍ୟରେ ମଧ୍ୟ ଆଗେଇବା । ଗବେଷଣାତ୍ମକ ପ୍ରୋଜେକ୍ଟମାନ ଅନୁଷ୍ଠିତ କରିବା, କର୍ମଶାଳା (Workshop) ମାନ ଅନୁଷ୍ଠିତ କରିବା ପ୍ରଭୃତି । ଏହି ଗବେଷଣା ସଂସ୍ଥାରେ ତିନିଜଣ ଗବେଷକ ସେମାନଙ୍କର ପି. ଏଚ୍. ଡ଼ି. ଡ଼ିଗ୍ରୀପାଇଁ ଗବେଷଣା କରୁଛନ୍ତି । 'ଝୁମୁକା' ନାମରେ ଦୁଇଖଣ୍ଡ ସଂକଳନ (ପ୍ରଥମ ଖଣ୍ଡଟି 'ଶିଶୁଗଳ୍ପ' ଓ ଦ୍ୱିତୀୟ ଖଣ୍ଡଟି 'ଶିଶୁକବିତା') ପ୍ରକାଶିତ ହୋଇଛି ।

ଏହି ଗବେଷଣା ସଂସ୍ଥା ଆନୁକୂଲ୍ୟରେ ଫେବୃଆରୀ ମାସରେ ଓଡ଼ିଶାରେ ସର୍ବପ୍ରଥମ ଥର ପାଇଁ ଶିଶୁ ସାହିତ୍ୟ କର୍ମଶାଳା (Workshop) ଉଦ୍‌ଘାଟନରେ ଅନୁଷ୍ଠିତ ହୋଇ ଯାଇଛି । ଚାରିଦିନ ବ୍ୟାପୀ (ଫେବୃଆରୀ ୨୧ ତାରିଖଠାରୁ ୨୪ ତାରିଖ) ଏହି କର୍ମଶାଳାରେ ୩୦ଜଣ ଶିଶୁ-ସାହିତ୍ୟିକ ଓ ସଂପାଦକ ଅଂଶ ଗ୍ରହଣ କରିଥିଲେ । ଏଥିରେ ଶିଶୁ-ମନୋବିଜ୍ଞାନ, ଶିଶୁ ଚିତ୍ରକଳା, ଶିଶୁ ସାହିତ୍ୟ, ଶିଶୁ-ପତ୍ରିକା ସଂପାଦନା, ଶିଶୁ ଯତ୍ନ, ସମାଜ ବିଜ୍ଞାନ, ଶିଶୁ-ଶିକ୍ଷା ବିଷୟରେ ଶିକ୍ଷାଦାନ କରାଯିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ସାହିତ୍ୟିକ ବିଭିନ୍ନ ବୟସର ପିଲାମାନଙ୍କ ପାଇଁ ଗଳ୍ପ ଓ କବିତା ରଚନା କରିଥିଲେ । ଏହା ସବୁ ବିଶେଷଜ୍ଞମାନଙ୍କ ଦ୍ୱାରା ସମୀକ୍ଷା

କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକ ସେହି ସେହି ବୟସର ପିଲମାନଙ୍କ ଦ୍ୱାରା କେତେଦୂର ଆଦୃତ ହେଉଛି, ତାହା ପରୀକ୍ଷା କରା ଯାଇଥିଲା । ଉଚ୍ଚ ପ୍ରାଥମିକ ଓ ମାଇନର ସ୍କୁଲର ଛାତ୍ର-ଛାତ୍ରୀମାନଙ୍କ ଦ୍ୱାରା ଏହା ସବୁ ପରୀକ୍ଷା କରଯାଇଁ ପୂର୍ବ ସମୀକ୍ଷା ସହିତ ତୁଳନା କରଯାଇ ପୁଣି ସଂଶୋଧନ କରା ଯାଇଥିଲା । ଏହି କର୍ମଶାଳାର ଶେଷ ପର୍ଯ୍ୟାୟରେ ଦୀକ୍ଷାନ୍ତ ଭାଷଣ ପରେ ପ୍ରତିନିଧିମାନଙ୍କୁ ପ୍ରମାଣପତ୍ର ପ୍ରଦାନ କରଯାଇଥିଲା । ବିଭିନ୍ନ ଦିବସରେ ଅଂଶ ଗ୍ରହଣ କରିଥିଲେ ଡକ୍ଟର କୃଷ୍ଣଚରଣ ବେହେରା, ଡକ୍ଟର ଜଗନ୍ନାଥ ମହାନ୍ତି, ଡକ୍ଟର ଅଧିକାରୀ ଶ୍ରୀକାନ୍ତ ଦାସ, ଡକ୍ଟର ଦେବେନ୍ଦ୍ର ନାଥ ଦାସ, ଡକ୍ଟର ମନୀନ୍ଦ୍ର ମହାନ୍ତି, ଶ୍ରୀ ଅଶୋକ ମହାନ୍ତି, ଶ୍ରୀ ରାମକୃଷ୍ଣ ନନ୍ଦ, ଶ୍ରୀ ଯତୀନ୍ ଦାସ ଓ ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି । ଭୁବନେଶ୍ୱରରେ କୌଣସି ଏକ ଛୁଟିରେ ଏହାର ଦ୍ୱିତୀୟ 'କର୍ମଶାଳା' ଅନୁଷ୍ଠିତ ହେବାର ଯୋଜନା ରହିଛି । ତା ପରେ ପରେ ଏହାର ବିଭିନ୍ନ ୟୁନିଟ୍ ଯଥା—ତାଳଚେର, ସମ୍ବଲପୁର, ବାରିପଦା, କୋରାପୁଟ, ବାଲେଶ୍ୱର ଓ ରାଉରକେଲା ଆଦି ସ୍ଥାନମାନଙ୍କରେ ଆଞ୍ଚଳିକତା ଭିତ୍ତିରେ କର୍ମଶାଳାମାନ ଅନୁଷ୍ଠିତ ହେବାର ଯୋଜନା ରହିଛି ।

'ଓଡ଼ିଆ ଶିଶୁ ସାହିତ୍ୟର ଉନ୍ମେଷ ଓ ବିକାଶ' ଶୀର୍ଷକରେ ଗବେଷଣା ହେଲା ପରେ ବର୍ତ୍ତମାନ ପ୍ରତ୍ୟେକଟି ବିଭାଗ ଉପରେ ଗବେଷଣା କରିବାର ସମୟ ଆସିଛି । ଯଥା—ଓଡ଼ିଆ ଶିଶୁ କବିତା, ଓଡ଼ିଆ ଶିଶୁ ଗଳ୍ପ, ଓଡ଼ିଆ ଶିଶୁ ନାଟକ, ଓଡ଼ିଆ ଶିଶୁ ଜୀବନୀ ଇତ୍ୟାଦି । ଓଡ଼ିଆ ସାହିତ୍ୟ ଦରବାରରେ ଶିଶୁ-ସାହିତ୍ୟ ସିନା ଆବିଷ୍କାର କରାଗଲା, କିନ୍ତୁ ଏହି ରାଜ୍ୟକୁ ସଡ଼କଟିଏ ନିର୍ମାଣ କରିଦେଲେ କାମ ସରିଗଲା ନାହିଁ । ଏହା ପରେ ସେଠାରେ ଗୃହନିର୍ମାଣ, ବିଦ୍ୟୁତ୍‌କରଣ, ଜଳଯୋଗାଣ ଆଦିର ବ୍ୟବସ୍ଥା ହେବା ଉଚିତ । ନ ହେଲେ ତାହା ସେହିପରି ଅବହେଳିତ ହୋଇ ପଡ଼ିଥିବ । ଅରମା ଜମିଯିବ । ପରବର୍ତ୍ତୀ ଗବେଷକମାନେ ଏହି ଦାୟିତ୍ୱ ତୁଲାଇବେ ।

'ସଂଗୀତ' ଦିଗରୁ ଶିଶୁଗୀତର ଗବେଷଣା ଏପର୍ଯ୍ୟନ୍ତ ବି ଚିନ୍ତା କରଯାଇ ନାହିଁ । ଭାରତର ବିଭିନ୍ନ ଭାଷାଭାଷୀର ଶିଶୁ ସାହିତ୍ୟ ରଚନା ମଧ୍ୟରେ ତୁଳନାତ୍ମକ ଅଧ୍ୟୟନ ହୋଇ ନାହିଁ । ଶିଶୁ-ସାହିତ୍ୟ ଓ ଲୋକ-ସାହିତ୍ୟ ମଧ୍ୟରେ ସଂପର୍କକୁ ନେଇ ବିଚାର ଆଲୋଚନା କରିବାର ଆବଶ୍ୟକତା ରହିଛି । ଗୃହ ବିଜ୍ଞାନ (Home Science) ଏବଂ ଶିଶୁ ମନୋବିଜ୍ଞାନ (Child Psychology) ବିଭାଗରେ ମଧ୍ୟ 'ଶିଶୁ-ସାହିତ୍ୟ' ଉପରେ ଗବେଷଣା କରିବାର ଅବକାଶ ରହିଛି । ସେହିପରି ସ୍ୱାଧୀନୋତ୍ତର ଓଡ଼ିଆ ଶିଶୁ-ସାହିତ୍ୟ ପ୍ରସଙ୍ଗରେ ମଧ୍ୟ ଗବେଷଣା କରିବାର ଅଛି । ଓଡ଼ିଆ ଶିଶୁର ଭାଷା-ଭଣ୍ଡାର (Vocabulary) ଏବଂ 'ଓଡ଼ିଆ ଶିଶୁ ଜ୍ଞାନ ମଣ୍ଡଳ' (Oriya Children's Encyclopaedia)ପ୍ରସଙ୍ଗରେ ମଧ୍ୟ ଆମ ଗବେଷକମାନେ ଦୃଷ୍ଟି ଦେବା ଆବଶ୍ୟକ ହୋଇ ପଡ଼ିଲାଣି । ଏହି ସମସ୍ତ ଯେପରି ସମୟ ସାପେକ୍ଷ, ସେହିପରି ବ୍ୟୟ ସାପେକ୍ଷ ମଧ୍ୟ । ରାଜ୍ୟର ଶିକ୍ଷା ନିର୍ଦ୍ଦେଶାଳୟଙ୍କ ସହଯୋଗ ଏଥିପାଇଁ ଆବଶ୍ୟକ । ତା' ହେଲେ ଏ ସବୁ ଦିଗରେ ଯଥାଶୀଘ୍ର ଉନ୍ନତି ଲାଭ କରିହେବ ।

ଗୋଟିଏ ରାଜ୍ୟରେ କେବଳ ଗୁଡ଼ାଏ ଶିଶୁ ପତ୍ରିକା ପ୍ରକାଶ କରି ଦେଲେ ଶିଶୁ-ସାହିତ୍ୟର ଯେ ଉନ୍ନତି ହୋଇଯିବ, ତାହା ନୁହେଁ । ସେ ସଂପର୍କରେ ବିଚାର ଆଲୋଚନା, ଗବେଷଣା ଆଦି କରିବାର ଆବଶ୍ୟକତା ରହିଛି । ତେଣୁ ମନ୍ଥନର ଆବଶ୍ୟକତା ରହିଛି । ଏହି ମନ୍ଥନକୁ ଅଧିକ ସକ୍ରିୟ କରିବା ପାଇଁ ଏବେ 'ଓଡ଼ିଶା ଶିଶୁ-ସାହିତ୍ୟ ଏକାଡେମୀ' ନାମରେ ରାଜ୍ୟ ସ୍ତରୀୟ ଏକ ସଂସ୍ଥା ଗଠନ କରା ଯାଇଛି । ଆଶା କରଯାଏ, ଏହି ସୁବୃହତ ସଂସ୍ଥା ଦ୍ୱାରା ଓଡ଼ିଆ ଶିଶୁ-ସାହିତ୍ୟରେ ଯେଉଁସବୁ ଅନାଲୋଚିତ ଦିଗ ରହିଛି, ସେ ସଂପର୍କରେ ବିଜ୍ଞାନ ସମ୍ମତ ଗବେଷଣା କରଯାଉ, ଏବଂ ବହୁବିଧ ସମସ୍ୟାର ସମାଧାନ ଦିଗରେ ନୂଆ ନୂଆ ବାଟ ଫିଟିବ । ସରକାର ଏ ଦିଗରେ ବିହିତ ପଦକ୍ଷେପ ନେବା ଉଚିତ ହେବ । କାରଣ, ଏ ସମସ୍ତ କାର୍ଯ୍ୟ ପାଇଁ ସୁପ୍ରଚୁର ଅର୍ଥ ଆବଶ୍ୟକ । ହେଲେ, ସେ ଯାହା ହେଉ, ଓଡ଼ିଶାରେ ଶିଶୁ-ସାହିତ୍ୟ ଗବେଷଣାର ଭବିଷ୍ୟତ ଯେ ଆଶାଜନକ ଏଥିରେ ସନ୍ଦେହ ନାହିଁ । ●

# ଶିଶୁ-ସାହିତ୍ୟ ଓ ଶିଶୁଙ୍କ ପାଇଁ ସାହିତ୍ୟ

ଶ୍ରୀ ବାମନଚରଣ ମିଶ୍ର

## ସାହିତ୍ୟ ପର୍ଯ୍ୟାୟରେ ଶିଶୁ-ସାହିତ୍ୟ :

ଲିଖିତ ହେଉ ବା କଥିତ ହେଉ, ପ୍ରତ୍ୟେକ ଭାଷାରେ ସାହିତ୍ୟ ରହିଛି । ଜାତୀୟ ହିତ ସାଧନ ଦୃଷ୍ଟିରୁ ଯେ କୌଣସି ଭାଷା ଭାଷୀ ଜାତି ପକ୍ଷରେ ସାହିତ୍ୟ ଏକାନ୍ତ ଅପରିହାର୍ଯ୍ୟ । ସାଧାରଣ ସାହିତ୍ୟରେ ଅଙ୍ଗାଙ୍ଗୀ ଭାବରେ ରହିଥିଲେ ମଧ୍ୟ ଶିଶୁ ସାହିତ୍ୟର ସ୍ଥିତି ଏକ ଗୁରୁତ୍ୱ-ପୂର୍ଣ୍ଣ ପୃଷ୍ଠ-ଭୂମି ଗ୍ରହଣ କରିଛି । ଭାଷା ଶିକ୍ଷାରୁ ସାଧାରଣତଃ ସାହିତ୍ୟ ଶିକ୍ଷାର ପ୍ରାରମ୍ଭ । ସମାଜବାସୀ ମନୁଷ୍ୟ ଶୈଶବ ଅବସ୍ଥାରୁ ମାତାଙ୍କଠାରୁ ଭାଷା ଶିକ୍ଷା କରେ । ଏଣୁ ନିଜସ୍ୱ ଭାଷା 'ମାତୃଭାଷା' ନାମରେ ଖ୍ୟାତ । ଏହି ଭାଷା ଶିକ୍ଷାର କ୍ରମୋତ୍କର୍ଷ ସାହିତ୍ୟ ଶିକ୍ଷାରେ ପରିଣତ ହୋଇଥାଏ ; ଅର୍ଥାତ୍ ଭାଷାର ଉତ୍ତରଣ ସାହିତ୍ୟରେ ପରିଣତ ହୁଏ ।

ଶିଶୁମାନଙ୍କୁ ସାହିତ୍ୟ ଶିକ୍ଷା କ୍ରମ କଠିନ ପଦ୍ଧତିରେ ପ୍ରଦତ୍ତ ହୋଇଥାଏ । ସେମାନଙ୍କ ଭାବ ଓ ଭାଷାଭଣ୍ଡାର ଅନୁକ୍ରମେ ସାହିତ୍ୟ ଶିକ୍ଷା ଦିଆଯାଏ । ଶୈଶବ ଓ ପ୍ରାକ୍‌କିଶୋର ବୟସର ଛାତ୍ରମାନଙ୍କୁ ଯେଉଁ ସାହିତ୍ୟ ଶିକ୍ଷା ଦିଆ ଯାଇଥାଏ, ତାହା "ଶିଶୁ ସାହିତ୍ୟ" ନାମରେ ଆଖ୍ୟାତ । ସାଧାରଣ ସାହିତ୍ୟ ଯେତେ ବିପୁଳ, ବିକଶିତ ଓ ସମୃଦ୍ଧିଶାଳୀ ହେଲେ ହେଁ ଶିଶୁ ସାହିତ୍ୟେ ଏହାର ପୃଷ୍ଠଭୂମି । ଯେଉଁ ଭାଷାରେ ଶିଶୁ ସାହିତ୍ୟର ଭିତ୍ତି ଯେଉଁ ପରିମାଣରେ ସୁଦୃଢ଼ ତାହାର ସାଧାରଣ ସାହିତ୍ୟ ସେହି ପରିମାଣରେ ସମୃଦ୍ଧିଶାଳୀ । କେତେକ ସାହିତ୍ୟିକ ସାଧାରଣ ସାହିତ୍ୟର ସ୍ଥିତିକୁ ସ୍ୱୀକାର କରନ୍ତି ନାହିଁ କିମ୍ବା କରିବାକୁ କୁଣ୍ଠିତ ହୁଅନ୍ତି । ଭିତ୍ତି ବ୍ୟତି-ରେକେ ସୌଧ ନିର୍ମାଣ ଅସମ୍ଭବ ହେଲା ପରି ଶିଶୁ ସାହିତ୍ୟକୁ ବାଦ୍ ଦେଲେ ସାଧାରଣ ସାହିତ୍ୟ ଆଦୌ ସମ୍ଭବପର ନୁହେଁ । ଏଣୁ ଶିଶୁ ସାହିତ୍ୟକୁ ବାଦ୍ ଦେଲେ ସାଧାରଣ ସାହିତ୍ୟ ଆଦୌ ସମ୍ଭବପର ନୁହେଁ । ଏଣୁ ଶିଶୁ ସାହିତ୍ୟ ହିଁ ସାଧାରଣ ସୌଧର ମୂଳଭିତ୍ତି ରୂପେ ମାନ୍ୟ ।

## ଶିଶୁଙ୍କର ସାହିତ୍ୟ :

ଶିଶୁମାନଙ୍କ ଦ୍ୱାରା ରଚିତ ସାହିତ୍ୟକୁ ଅନେକେ 'ଶିଶୁ ସାହିତ୍ୟ' ବୋଲି କହିଥାନ୍ତି । ସାଧାରଣ ଦୃଷ୍ଟି କୋଣରୁ ଦେଖିଲେ ଶିଶୁ ବିକାଶୋନ୍ମୁଖୀ ହେଲେ ମଧ୍ୟ ପର୍ଯ୍ୟାପ୍ତ ଜ୍ଞାନର ଅଧିକାରୀ ନୁହେଁ ; ତେଣୁ ତା' ପକ୍ଷରେ ସାହିତ୍ୟ ରଚନା ଅସମ୍ଭବ । ଶୈଶବର ପ୍ରାନ୍ତ ଭାଗରେ କିମ୍ବା କିଶୋର ବୟସରେ କେତେକ ଶିଶୁ ସାହିତ୍ୟ ରଚନା କରିଥାନ୍ତି । ଏହାର ଦୃଷ୍ଟାନ୍ତ ପର୍ଯ୍ୟାପ୍ତ ନ ହେଲେ ମଧ୍ୟ ନଗଣ୍ୟ ନୁହେଁ । ମାତ୍ର ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ମାନବ ଶିଶୁ ହିଁ ଜୀବନ୍ତ ସାହିତ୍ୟ । ତାହାର କ୍ରମବିକାଶ, ଆତ୍ମ ପ୍ରକାଶର କ୍ରମ, ସାହିତ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ । ସାଧାରଣ ସାହିତ୍ୟିକ ଏହାର ପର୍ଯ୍ୟବେକ୍ଷଣ ଓ ପରିଶୀଳନ ଫଳରେ ପ୍ରେରଣା ଲାଭ କରି ଶିଶୁ ସାହିତ୍ୟ ରଚନାରେ ପ୍ରୟାସୀ ହୁଅନ୍ତି । ଶିଶୁ ଯଥାର୍ଥ ଭାବରେ ଆତ୍ମପ୍ରକାଶର ସୁଯୋଗ ପାଇଲେ ସାହିତ୍ୟ ସୃଷ୍ଟି କରିବାକୁ ସମର୍ଥ ହୁଏ । ଯେଉଁ ଶିଶୁ-କିଶୋରମାନେ ସାହିତ୍ୟ ସୃଷ୍ଟିରେ ସଫଳ

ହୋଇଛନ୍ତି, ସେମାନଙ୍କର ସାହିତ୍ୟ ଶିକ୍ଷା ନିଶ୍ଚୟ ଯଥାର୍ଥ ଭାବରେ ସମାହିତ ହୋଇଥିଛି । ଅପର ପକ୍ଷରେ ଶିଶୁର ଦରଗେଟି ଭାଷା, ଆତ୍ମପ୍ରକାଶର ଅଦମ୍ୟ ଆକାଂକ୍ଷା ଓ ପ୍ରଚେଷ୍ଟା ସାଧାରଣ ସାହିତ୍ୟିକମାନଙ୍କୁ ଶିଶୁସାହିତ୍ୟିକରେ ପରିଣତ ହେବାକୁ ପ୍ରେରଣା ଦେଇଛି ।

## ଶିଶୁ ପାଇଁ ସାହିତ୍ୟ :

ଶିଶୁଙ୍କ ପାଇଁ ଯେଉଁ ସାହିତ୍ୟ ଉଦ୍ଦିଷ୍ଟ, ଆମେ ମୁଖ୍ୟତଃ ତାହାକୁ 'ଶିଶୁ ସାହିତ୍ୟ' କହୁଁ । ବାସ୍ତବରେ ଏହାହିଁ ସର୍ବବାଦୀ-ସମ୍ମତ 'ଶିଶୁ ସାହିତ୍ୟ' । ଶିଶୁକୁ ପ୍ରଥମେ ଭାଷାଶିକ୍ଷା ଦେବାପାଇଁ ତା' ପାଖରେ ମାତା ଯେଉଁସବୁ ବିଷୟ ପରିବେଷଣ କରନ୍ତି, ଶିଶୁସାହିତ୍ୟର ଅୟମାରମ୍ଭ ସେହିଠାରୁ ହୁଏ । "ଧୋରେ ବାଇଆ ଧୋ, ଯେଉଁ କିଆରୀରେ ଗହଳ ମାଣ୍ଡିଆ, ସେହି କିଆରୀରେ ଶୋ" ଆଦି ଶିଶୁ-ଶୁଆଇବା ଗୀତ, ଶିଶୁସାହିତ୍ୟ । ଏହି ପରିପ୍ରେକ୍ଷୀରେ ଶିଶୁକୁ ଖୁଆଇବା ବେଳେ, ବୁଝାଇବା ବେଳେ ଓ ଅନ୍ୟାନ୍ୟ ପରିପ୍ରେକ୍ଷୀରେ ମାତା ଯେଉଁସବୁ ସାହିତ୍ୟ ପରିବେଷଣ କରିଥାନ୍ତି, ସେଗୁଡ଼ିକ ମଧ୍ୟ ଏହି ଶିଶୁସାହିତ୍ୟ ପର୍ଯ୍ୟାୟଭୁକ୍ତ । ବିଧିବଦ୍ଧ ଭାଷାସୃଷ୍ଟି କିମ୍ବା ଲିପି ଉଦ୍ଭାବନ ପୂର୍ବରୁ ଏପରି ଶିଶୁସାହିତ୍ୟର ମୂଳଉତ୍ସ ପ୍ରବାହିତ ହୋଇ ଆସିଛି ଏବଂ ସାମାଜିକ ପ୍ରଗତି କ୍ରମରେ ଏହା ଉତ୍କର୍ଷ ଲାଭ କରିଛି । ଏଗୁଡ଼ିକର ରଚନା, କ୍ରମୋନ୍ନତି ଏବଂ ପରିବର୍ତ୍ତିତ ପରିସ୍ଥିତି ସହ ସମତାଳୀୟ ଗତି ଏକ ବିସ୍ମୟକର ବ୍ୟାପାର । ସମାଜର କେଉଁ ମହନୀୟା ମାତା କିମ୍ବା ମହନୀୟ ପିତାଙ୍କ ମୁଖରୁ ଏହି ସାହିତ୍ୟ ନିଃସୃତ ହୋଇଛି, କିମ୍ବା ଯେଉଁମାନେ ଏଗୁଡ଼ିକର ରଚୟିତା, ତାର ଇତିହାସ ନାହିଁ । ପରମ୍ପରାକ୍ରମେ ସମାଜରେ ଏଗୁଡ଼ିକ ପ୍ରଚଳିତ ହୋଇ ଆସୁଛି । ଶିଶୁଶିକ୍ଷା କ୍ଷେତ୍ରରେ ଏଗୁଡ଼ିକର ପ୍ରଭାବ ବିପୁଳ ଏବଂ ଏଗୁଡ଼ିକ ଶିଶୁସାହିତ୍ୟର ଅପରିହାର୍ଯ୍ୟ ଅଙ୍ଗ । ଏଗୁଡ଼ିକ 'ଲୋକ-ବେଦ' ନାମରେ କଥିତ ହେବାରେ କୌଣସି ଅଯୌକ୍ତିକତା ନାହିଁ । ବେଦମନ୍ତ୍ର ଭଳି ଶିଶୁମାନଙ୍କ ଉପରେ ଏଗୁଡ଼ିକର ପ୍ରଭାବ ଅତ୍ୟନ୍ତ କଲ୍ୟାଣକର ।

## ଶିଶୁସାହିତ୍ୟର ବିଭିନ୍ନ ବିଭାଗ :

ଶିଶୁକୁ ଖୁଆଇବା, ପିଆଇବା, ଶୁଆଇବା, ବୁଝାଇବା, ଜ୍ଞାନ ପରିସର ବୃଦ୍ଧି କରିବା ପାଇଁ ଆମ ଶିଶୁସାହିତ୍ୟ ସର୍ବତୋଭାବେ ଉଦ୍ଦିଷ୍ଟ ହୋଇ ଆସିଛି । ଏହି ଗୀତଗୁଡ଼ିକ କିପରି ଯାଦୁକରୀ ଶକ୍ତିସମ୍ପନ୍ନ, ନିମ୍ନୋକ୍ତ ଉଦ୍ଧୃତିରୁ ପ୍ରତିପାଦିତ ହୁଏ ।

'ବାୟା ଚଢ଼େଇରେ ବାୟା ଚଢ଼େଇ ତୁ
କୃଷ୍ଣ ଦୁଆରକୁ ଆଆ,
ଆଖି ବୁଜି କରି କୃଷ୍ଣ ଶୋଇଲେ ତୁ
ବସାକୁ ଉଡ଼ିଣ ଯାଆ ।
ବାୟା ଚଢ଼େଇରେ ବାୟା ଚଢ଼େଇ ତୁ
କୃଷ୍ଣ ସଙ୍ଗତରେ ଥିବୁ,
ଖେଳି ବୁଲି ସାରି କୃଷ୍ଣ ଶୋଇଲେ ତୁ
ବସାକୁ ଉଡ଼ିଣ ଯିବୁ ।
ତୋ ବସା ବାଇଆ ଉଚ ତାଳଗଛେ,
ବାଆ କଲେ ଦୋହଲଇ,
ଘୋର ବରଷାରେ ତୋ ବସା ଭିତରେ
ପାଣି ପଶି ନ ପାରଇ ।
ନଇବଢ଼ି ଘୋର ଗର୍ଜନ କଲେ
ତୋତେ ନ ମାଡ଼ଇ ଡର,
ଏଡ଼େ ବିପଦରୁ ତୋତେ ଯେ ରଖନ୍ତି,
ଧନ୍ୟ ଧନ୍ୟ ସେ ଇଶ୍ୱର ।

ପୁନଶ୍ଚ ଶିଶୁ ମନରେ ଆନନ୍ଦ ଓ ଆଶ୍ୱାସନା ଦେବା ପାଇଁ ମାଆ ଶିଶୁଗୀତ ଗାଇ ଶୁଣାନ୍ତି—

'ବାଇ ଚଢ଼େଇରେ ବାଇ ଚଢ଼େଇ,
ତୋ ମାଆ ଯାଇଛି ଗାଈ ଚରେଇ ।
ଗାଈ ଚର ଠାରୁ ଆଣିବ ବେଲ,
କୋଳରେ ବସାଇ କରିବ ଖେଲ ।...'

ଏହି ପରିପ୍ରେକ୍ଷୀରେ ଜଜମୀନା ଗୀତ ଓ କାହାଣୀ ଏକାନ୍ତ ମନୋବୈଜ୍ଞାନିକ ପଦ୍ଧତିରେ ଶିଶୁକୁ ଖୁଆଇବା,

ଶୁଆଇବା ଓ ସାହସୀ ହେବା ପାଇଁ ଉଦ୍ଦିଷ୍ଟ । ମାଆ ଅତି କୌଶଳରେ ଜକମୀନାର କାଳ୍ପନିକ ଭୟଙ୍କର ରୂପର ଅବତାରଣା କରି ଅବୁଝା ପୁଅ ବା ଝିଅକୁ ଖୁଆନ୍ତି ଅବା ଶୁଆନ୍ତି । ପିଲା ଖାଇ ସାରିଲେ କିମ୍ବା ଶୋଇବାର ଉପକ୍ରମ କଲେ କହନ୍ତି, "ତିରୁଳି ଛାଟରେ ଜକମୀନାକୁ ଦୁଇଛାଟ କଷିଦେଲି ଯେ, ସେ ବିକଳରେ ପଳାଇଲା ।" ବିଭିନ୍ନ ପରୀ କାହାଣୀ, ପକ୍ଷୀରାଜ ଘୋଡ଼ା, ମନପବନ-କଠଉ ଆଦି କାହାଣୀ ଶିଶୁକୁ କେବଳ ଆନନ୍ଦରେ ଉଦ୍‌ବୁଦ୍ଧ କରେ ନାହିଁ କିମ୍ବା କଳ୍ପନା-ସାଗରରେ ସନ୍ତରଣ କରାଏ ନାହିଁ, ତାହାଠାରେ ସୃଜନମୂଳକ କୌତୂହଳ ସୃଷ୍ଟିପୂର୍ବକ ତାହାକୁ ଆବିଷ୍କାରକ ଓ ଭାବୁକ ହେବାକୁ ପ୍ରେରଣା ଦିଏ ।

## ପରିପ୍ରେକ୍ଷୀର କ୍ରମୋନ୍ନତିରେ ଶିଶୁସାହିତ୍ୟ :

ଯୁଗକୁ ଯୁଗ ସାମାଜିକ ପ୍ରଗତି ବଢ଼ି ବଢ଼ି ଚାଲିଛି । ଏହି କ୍ରମବର୍ଦ୍ଧମାନ ପରିବେଶ ସହ ସମତାଳରେ ଶିଶୁ-ସାହିତ୍ୟ ଗତିଶୀଳ ହୋଇ ଆସିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । କେଉଁ ଯୁଗଯୁଗାନ୍ତରରୁ 'ଲୋକବେଦ' ସ୍ୱରୂପ ଆମ ଶିଶୁସାହିତ୍ୟର କଥା କାହାଣୀ, କବିତା ଶିଶୁ ସମାଜର ବିକାଶ ନିମନ୍ତେ ଉଦ୍ଦିଷ୍ଟ ହୋଇ ଆସିଛି । ମୁଦ୍ରାଯନ୍ତ୍ରର ପ୍ରଚଳନ ପରେ ଏହାର ଯଥାର୍ଥ ବିକାଶ ସହଜ ଓ ସମ୍ଭବପର ହୋଇଅଛି । ମୁଦ୍ରାଯନ୍ତ୍ରର ଆନୁକୂଲ୍ୟରେ ଆମ ରାଜ୍ୟରେ ପ୍ରଥମେ ଧର୍ମସାହିତ୍ୟ ମୁଦ୍ରିତ ହୋଇଥିଲା । ସରଳ ଓ ସହଜବୋଧ୍ୟ ଭାଷାରେ ଲିଖିତ ଧର୍ମଭିତ୍ତିକ ଛାନ୍ଦ, ଚଉତିଶା ଆଦି ଶିଶୁମାନଙ୍କର ପାଠ୍ୟପୁସ୍ତକରୂପେ ବ୍ୟବହୃତ ହୋଇଥିଲା । 'କମଳ ଲୋଚନ ଶ୍ରୀହରି', 'କଳା କଳେବର କହ୍ନାଇ', 'କୋଇଲି ଲୋ, କେଶବ ଯେ ମଥୁରାକୁ ଗଲା', 'କୋଇଲି ଲୋ, କାନ୍ତ ମୋର ଗଲେ ମୃଗ ମାରି', 'କହଇ ମନ ଆରେ ମୋ ବୋଲ କର' ଆଦି ଶିଶୁସାହିତ୍ୟ ଭାବରେ ପଠିତ ହେଉଥିଲା । ଏହା ସବୁ ଶିଶୁମାନଙ୍କର ବିଶେଷ ବୋଧଗମ୍ୟ ନ ଥିଲା, ମାତ୍ର ଏଗୁଡ଼ିକର ସାଙ୍ଗୀତିକ ପ୍ରଭାବ ଶିଶୁମାନଙ୍କୁ ଆକୃଷ୍ଟ ଓ ପଠନାଗ୍ରହୀ କରୁଥିଲା । ତେଣୁ ଏଗୁଡ଼ିକ ସେ ସମୟରେ ଶିଶୁସାହିତ୍ୟର ସ୍ଥାନ ଗ୍ରହଣ କରିଥିଲା ।

କ୍ରମେ ପରବର୍ତ୍ତୀ କାଳରେ ଆମ ରାଜ୍ୟର ସାହିତ୍ୟିକମାନେ ଶିଶୁସାହିତ୍ୟ ରଚନା କଲେ । ବିଭିନ୍ନ ବିଭବସମ୍ବଳିତ ଶିଶୁସାହିତ୍ୟ ପ୍ରକାଶ ପାଇଲା । ଭାଷା, ବିଜ୍ଞାନ, ଇତିହାସ, ସଦାଚାର ଶିକ୍ଷା ଦେବା ପାଇଁ ଏହି ସାହିତ୍ୟ ଯଥାର୍ଥ ଭାବରେ ଉପଯୋଗୀ ହେଲା । ଏହି ପରିପ୍ରେକ୍ଷୀରେ ଆମ ରାଜ୍ୟର ଶିଶୁସାହିତ୍ୟର ପ୍ରଗତି ଆରମ୍ଭ ହେଲା ।

ତଥାପି ଆମେ ଆମ ଶିଶୁସାହିତ୍ୟକୁ ପ୍ରଗତିଶୀଳ ପାଶ୍ଚାତ୍ୟଦେଶର କିମ୍ବା ଆମଠାରୁ ଅଧିକ ଉନ୍ନତ ଆମ ପଡ଼ୋଶୀ ରାଜ୍ୟର ଉନ୍ନତ ଶିଶୁସାହିତ୍ୟ ପରି ଶିଶୁ-ସାହିତ୍ୟ ସୃଷ୍ଟି କରିପାରି ନାହୁଁ । ସମ୍ପ୍ରତି ପୃଥିବୀର ଉନ୍ନତ ଦେଶଗୁଡ଼ିକ ବୈଜ୍ଞାନିକ ବିକାଶର ଶୀର୍ଷରେ ଅବସ୍ଥିତ । ତଦନୁଯାୟୀ ସେମାନଙ୍କର ଶିଶୁସାହିତ୍ୟ ମଧ୍ୟ ଉନ୍ନତିର ଶୀର୍ଷସ୍ଥଳରେ । ମାତ୍ର ଏହି ପରିପ୍ରେକ୍ଷୀରେ ଆମ ଶିଶୁ-ସାହିତ୍ୟ ଅଗ୍ରଗତି କରି ନ ପାରି ଦୟନୀୟ ଓ ଶୋଚନୀୟ ସ୍ଥିତିରେ ରହିଅଛି । ଦେଶ ଓ ଜାତିର ସାମଗ୍ରିକ ବିକାଶ ଦୃଷ୍ଟିରୁ ଆମ ସାହିତ୍ୟିକମାନେ ପ୍ରଗତିଶୀଳ ବୈଜ୍ଞାନିକ ଆଭିମୁଖ୍ୟ ସୃଷ୍ଟି କରିବା ଆବଶ୍ୟକ । କେବଳ ବୈଜ୍ଞାନିକ ବା ବୈଷୟିକ ପ୍ରଗତି ନୁହେଁ, ନୈତିକ ଓ ଚାରିତ୍ରିକ ଉନ୍ନତି ମଧ୍ୟ ଆମ ଶିଶୁସାହିତ୍ୟର ଅପରିହାର୍ଯ୍ୟ ଲକ୍ଷ୍ୟ ହେବ ।

ସମ୍ପ୍ରତି ପୃଥିବୀରେ ସମ୍ପ୍ରୀତିର ଅଭାବ । ପକ୍ଷାନ୍ତରେ ହିଂସା ଓ ଯୁଦ୍ଧ ଆତଙ୍କ ବଢ଼ି ଚାଲିଛି । ତଜ୍ଜନିତ ବିପର୍ଯ୍ୟୟରୁ ରକ୍ଷା ପାଇବାକୁ ହେଲେ ଜାତୀୟ ସଂହତି, ସହାବସ୍ଥାନ, ନୈତିକତାର ବିକାଶ ଏକାନ୍ତ ଅପରିହାର୍ଯ୍ୟ । ଆମ ଶିଶୁ-ସାହିତ୍ୟ ଏହିସବୁ ବିଭବକୁ ଅଗ୍ରାଧିକାର ଦେଇ ଶାନ୍ତି, ମୈତ୍ରୀ ଓ ପ୍ରଗତିଭିତ୍ତିକ 'ପୃଥିବୀ-ପରିବାର' ଗଠନ କରୁ, ଏହାହିଁ କାମନା ।

●

# ଓଡ଼ିଆ ଶିଶୁ ସାହିତ୍ୟର ବିକାଶଧାରା

ଅଧ୍ୟାପକ ଡକ୍ଟର ଜଗନ୍ନାଥ ମହାନ୍ତି

## ଓଡ଼ିଆ ଶିଶୁ ସାହିତ୍ୟର ଉନ୍ମେଷ :

ଓଡ଼ିଆ ଶିଶୁ ସାହିତ୍ୟ ଓଡ଼ିଆ ସାହିତ୍ୟର ଆଦିମାତା । ଓଡ଼ିଆ ଜାତିର ଲୋକକଥା ଓ ଲୋକଗୀତି ମଧ୍ୟରେ ଓଡ଼ିଆ ଶିଶୁ ସାହିତ୍ୟ ପ୍ରଚ୍ଛନ୍ନ ଓ ପରିବ୍ୟାପ୍ତ । ଶିଶୁର ମନୋରଞ୍ଜନ ପାଇଁ କେଉଁ ଅନନ୍ତ କାଳରୁ ଶିଶୁଗୀତ, ନାନାବାୟା ଗୀତ, ପରୀକଥା, ନଁ। ଦିଆ, ଗୋଲକଧନ୍ଦା ପ୍ରଭୃତି ମୌଖିକ ଶିଶୁସାହିତ୍ୟ ରୂପରେ ପ୍ରଚଳିତ ହୋଇ ଆସିଥିଲା । ଶିଶୁ ତଥା କିଶୋରମାନଙ୍କ ଅଧ୍ୟୟନ ପାଇଁ ଯେଉଁ ସାହିତ୍ୟ ବ୍ୟବହୃତ ହେଲା, ତାହାହିଁ କେତେକାଂଶରେ ମୌଖିକ ହେଲେ ହେଁ ମୁଖ୍ୟତଃ ଲିଖିତ । ଗ୍ରାମ୍ୟ ପାଠଶାଳା ବା ଘଟଶାଳୀରେ ପିଲାଙ୍କୁ ପାଠ ପଢ଼ାଇବା ପାଇଁ ନାନାପ୍ରକାର ଚଉତିଶା, ବାରମାସୀ ଗୀତ, କୋଇଲି, ଭାଗବତ, ଗୋପୀଭାଷା ଆଦି ବ୍ୟବହୃତ ହେଉଥିଲା । ଏଗୁଡ଼ିକ ମୁଖ୍ୟତଃ ପଦ୍ୟସାହିତ୍ୟ ଏବଂ ଶିଶୁମାନଙ୍କ ପକ୍ଷେ ମନେ ରଖିବା ପାଇଁ ଉପଯୁକ୍ତ ହୋଇଥିଲା ।

ମାତ୍ର ଏହି ଶିଶୁସାହିତ୍ୟ ଥିଲା ଦୁର୍ବୋଧ୍ୟ ଏବଂ ଏହାର ବିଷୟବସ୍ତୁ ଥିଲା ଧର୍ମସମ୍ପର୍କୀୟ । ଲିଖନପଠନ ସହିତ ନୀତିଶିକ୍ଷା ଦେବା ଥିଲା ଏହି ସାହିତ୍ୟର ଉଦ୍ଦେଶ୍ୟ । ପିଲାମାନଙ୍କର ମନସ୍ତାତ୍ତ୍ୱିକ ଅବସ୍ଥା ଓ ଆବଶ୍ୟକତାକୁ ଦୃଷ୍ଟି ତାହା ଲେଖାଯାଇ ନ ଥିଲା । ପିଲାମାନେ ତାକୁ ବ୍ୟବହାର କରୁଥିଲେ, ମାତ୍ର ଉପଭୋଗ କରିପାରୁ ନ ଥିଲେ । ତେବେ ସାହିତ୍ୟିକ ତଥା ଭାଷାଜ୍ଞାନ ବୃଦ୍ଧି ନିମନ୍ତେ ଏଥିରେ ପର୍ଯ୍ୟାପ୍ତ ସୁଯୋଗ ଥିଲା ।

କ୍ରମେ ସମାଜର ପରିବର୍ତ୍ତିତ ପରିସ୍ଥିତିରେ ଶିଶୁ ସାହିତ୍ୟର ସୃଷ୍ଟି ଓ ଆଭିମୁଖ୍ୟରେ ପରିବର୍ତ୍ତନ ଦେଖାଗଲା । ଗ୍ରାମ୍ୟ ପାଠଶାଳାଗୁଡ଼ିକ କ୍ରମେ ଲୋପ ପାଇଲା ! ସେଗୁଡ଼ିକ ସ୍ଥାନରେ ପ୍ରାଥମିକ ବିଦ୍ୟାଳୟ ମୁଣ୍ଡ ଟେକିଲା । ପ୍ରାଚୀନ କୋଇଲି, ଚଉତିଶା, ଛାନ୍ଦ, ଗୋପୀଭାଷା, ଭାଗବତ ପ୍ରଭୃତି କ୍ରମେ ଆତ୍ମଗୋପନ କଲା । ସରକାରୀ ନିର୍ଦ୍ଦେଶରେ ନୂତନ ଧରଣର ପାଠ୍ୟପୁସ୍ତକ ପ୍ରଚଳିତ ହେଲା ।

## ଊନବିଂଶ ଶତାବ୍ଦୀରେ ବିକାଶ :

ଓଡ଼ିଶା ୧୮୦୩ ମସିହାରେ ଇଂରେଜ କର୍ତ୍ତୃତ୍ୱକୁ ଆସିଲା । ପ୍ରଥମେ ମିସନାରୀମାନେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ଶିକ୍ଷାର ଆଲୋକ ଦେଲେ । ମାତ୍ର ପ୍ରାଥମିକ ଶିକ୍ଷାକ୍ଷେତ୍ରରେ ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ ଅନୁଭୂତ ହେଲା । ସୁତରାଂ ୧୮୩୭ରେ ମିସନାରୀମାନେ ନିଜର ଗୋଟିଏ ପ୍ରେସ୍ ପ୍ରତିଷ୍ଠା କଲେ । ପାଠ୍ୟପୁସ୍ତକ ଲେଖି ଛାପିବାକୁ ଚେଷ୍ଟା କଲେ । ପୁରୀରେ ୧୮୩୫ ଓ କଟକରେ ୧୮୪୧ ମସିହାରେ ଗୋଟିଏ ଲେଖା ସରକାରୀ ବିଦ୍ୟାଳୟ ସ୍ଥାପିତ ହେଲା । ୧୮୬୦ ମସିହା ସୁଦ୍ଧା ସରକାରୀ ଓ ମିସନାରୀ ସ୍କୁଲଗୁଡ଼ିକର ମୋଟ ସଂଖ୍ୟା ଥିଲା ମାତ୍ର ୯୬ । ସେଥିରୁ ଇଂରେଜୀ ସ୍କୁଲ ଥିଲା ୧୪ ଓ ଓଡ଼ିଆ ସ୍କୁଲ ଥିଲା ୮୨ ।

ଏହିସବୁ ସ୍କୁଲଗୁଡ଼ିକର ସଂଖ୍ୟାବୃଦ୍ଧି ଓଡ଼ିଆ ଶିଶୁ ସାହିତ୍ୟର ବିକାଶରେ ସହାୟକ ହେଲା । ଓଡ଼ିଆ ଭାଷାରେ ମୌଳିକ ପୁସ୍ତକର ଅଭାବ ଥିବାରୁ ବଙ୍ଗଳାରୁ ଅନୂଦିତ ହୋଇ ପ୍ରାଥମିକ ବିଦ୍ୟାଳୟରେ ବ୍ୟବହୃତ ହେଲା । ଓଡ଼ିଶାର ପ୍ରାଚୀନ ପଦ୍ୟସାହିତ୍ୟର ସଦୁପଯୋଗ ହେଲା ନାହିଁ । ଅନୂଦିତ ପୁସ୍ତକ ମଧ୍ୟରେ ଓଡ଼ିଆ ବର୍ଣ୍ଣ ଶିକ୍ଷା', ହିତୋପଦେଶ, ନୀତିଶିକ୍ଷା ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ଏହି ଅବସ୍ଥାରେ ବ୍ୟାସକବି ଫକୀରମୋହନ କେତେକ ବନ୍ଧୁଙ୍କୁ ଧରି ପାଠ୍ୟପୁସ୍ତକ ରଚନା ଓ ପ୍ରେସ୍ ପ୍ରତିଷ୍ଠା କରିବାରେ ଲାଗି ପଡ଼ିଲେ । ଭାଷା, ଗଣିତ, ଭୂଗୋଳ ଓ ଇତିହାସରେ ଲିଖିତ ତାଙ୍କର ପାଠ୍ୟପୁସ୍ତକ ସରକାରୀ ସ୍ୱୀକୃତି ପାଇଥିଲା । ସାରା ରାଜ୍ୟରେ ପ୍ରଚଳିତ ହେବାକୁ ସେ ମଧ୍ୟ ଉତ୍ସାହିତ ହୋଇଥିଲେ । ଏହା ଊନବିଂଶ ଶତାବ୍ଦୀର ଶେଷଭାଗର କଥା ।

ତତ୍କାଳୀନ ଓଡ଼ିଶାର ଜଏଣ୍ଟ ଇନସପେକ୍ଟର କବିବର ରାଧାନାଥ ଓଡ଼ିଆ ପାଠ୍ୟପୁସ୍ତକ ପ୍ରଣୟନରେ ଖୁବ୍ ପ୍ରେରଣା ଦେଇଥିଲେ । ସେ ନିଜେ ଓ ଭକ୍ତକବି ମଧୁସୂଦନ ମିଶି "କବିତାବଳୀ" ପୁସ୍ତକଟି ରଚନା କରିଥିଲେ । ପରେ ମଧୁସୂଦନ ଶିଶୁସାହିତ୍ୟ ରଚନାରେ ବିଶେଷ କୃତିତ୍ୱ ଅର୍ଜନ କରିଥିଲେ । ତେଣୁ ତାଙ୍କୁ ଓଡ଼ିଆ ଶିଶୁସାହିତ୍ୟର ଜନକ କୁହାଯାଏ ।

## ବିଂଶ ଶତାବ୍ଦୀରେ ବିକାଶ :

ମଧୁସୂଦନଙ୍କ ରଚିତ ଓ ୧୮୯୫ରେ ପ୍ରକାଶିତ "ବର୍ଣ୍ଣବୋଧ" ବହୁଦିନ ଧରି ଓଡ଼ିଆ ଅକ୍ଷର ଶିକ୍ଷାର ଏକ ସାର୍ଥକ ମାଧ୍ୟମ ଭାବରେ ଲୋକପ୍ରିୟତା ଅର୍ଜନ କରିଥିଲା । ଏହା ଶିଶୁ ମନସ୍ତତ୍ତ୍ୱକୁ ନେଇ ରଚିତ ଏବଂ ଏଥିରେ ଥିବା ପ୍ରାକୃତିକ ଓ ବାସ୍ତବ ବର୍ଣ୍ଣନା ତଥା ଭକ୍ତି ଓ ନୀତିମୂଳକ କ୍ଷୁଦ୍ର କବିତାଗୁଡ଼ିକ ଶିଶୁମାନଙ୍କ ଦ୍ୱାରା ଖୁବ ଆଦୃତ ହୋଇଥିଲା । ତାଙ୍କ ଲିଖିତ "ଛାନ୍ଦମାଳା" ଓ "ବୋଧୋଦୟ" ପାଠ୍ୟପୁସ୍ତକରୂପେ ପ୍ରଚଳିତ ହୋଇଥିଲା । ଶିଶୁସାହିତ୍ୟ କ୍ଷେତ୍ରରେ ତାଙ୍କର କୃତିତ୍ୱ ଉଲ୍ଲେଖଯୋଗ୍ୟ ।

ପଲ୍ଲୀକବି ନନ୍ଦକିଶୋର ଗାଁଗହଳର ପରିଚିତ ବ୍ୟକ୍ତି ଓ ବସ୍ତୁର ସରସ ଓ ସଜୀବ ଚିତ୍ରଣ ଦେଇଛନ୍ତି ତାଙ୍କ ସାହିତ୍ୟରେ । ସରଳ ଭାଷା ଓ ଶୈଳୀରେ ଖଣ୍ଡକବିତା-ଗୁଡ଼ିକ ଶିଶୁମନକୁ ଛୁଇଁଲା ଭଳି ହୋଇଛି । ୧୯୧୫ରେ ପ୍ରକାଶିତ "ନାନାବାୟା ଗୀତ" ପିଲମାନଙ୍କ ମନୋରଞ୍ଜନ ପାଇଁ ସମର୍ଥ ହୋଇପାରିଛି । ତାଙ୍କର କବିତାପୁସ୍ତକ "ନିର୍ଝରଣୀ", "ପଲ୍ଲୀଚିତ୍ର" ପ୍ରଭୃତି ଶିଶୁସାହିତ୍ୟର ଉଜ୍ଜଳ ରତ୍ନ । ତାଙ୍କ ସମୟରେ ଓ ପରେ ଗୋପାଳ ପ୍ରହରାଜ, ଲକ୍ଷ୍ମୀକାନ୍ତ ମହାପାତ୍ର, ଗଙ୍ଗାଧର ମେହେର, ଭିକାରୀ ପଟ୍ଟନାୟକ ପ୍ରମୁଖ ଶିଶୁସାହିତ୍ୟ ରଚନାରେ କୃତିତ୍ୱ ଦେଖାଇଥିଲେ ।

ବିଂଶ ଶତାବ୍ଦୀର ତୃତୀୟ ଦଶକ ପରେ ପୃଥିବୀ ତଥା ଭାରତୀୟ ଶିଶୁସାହିତ୍ୟ ସମାଜ ବିଜ୍ଞାନ, ମନୋବିଜ୍ଞାନ ଓ ଭୌତିକ ବିଜ୍ଞାନ ଦ୍ୱାରା ପରିପୁଷ୍ଟ ହେଲା । ଶିଶୁସାହିତ୍ୟରେ ଶିଶୁ ମନସ୍ତତ୍ତ୍ୱର ଗୁରୁତ୍ୱ ଉପଲବ୍ଧି କରାଗଲା । ବିଜ୍ଞାନର ନୂତନ ଆବିଷ୍କାର ଓ ଉଦ୍ଭାବନ ଶିଶୁମାନଙ୍କର ବୋଧଗମ୍ୟ ଭାଷା ଓ ଶୈଳୀରେ ଲେଖାଯାଇ ନ ଥିଲା । ପ୍ରଥମେ ଶିକ୍ଷକ ବାଳକୃଷ୍ଣ କର ଏ ଦିଗରେ ପଥ ପ୍ରଦର୍ଶନ କଲେ । ତାଙ୍କ ଲିଖିତ "ନୂଆ ପାଠ" ଶିକ୍ଷାବିଭାଗ ଦ୍ୱାରା ଶିଶୁମାନଙ୍କ ପାଇଁ ପାଠ୍ୟପୁସ୍ତକରୂପେ ମନୋନୀତ ହେଲା । ତାଙ୍କ ରଚିତ "ଗଳ୍ପପାଠ", "ନୀତିମଞ୍ଜରୀ", "ସପନପୁରୀ", "ଫୁଲ-ଝୁଙ୍କୁଡ଼ି" ଶ୍ରେଷ୍ଠ ଶିଶୁସାହିତ୍ୟ ରୂପେ ବିବେଚିତ । ତାଙ୍କ ସମ୍ପାଦିତ ଶିଶୁସାହିତ୍ୟ ପତ୍ରିକା "ଜହ୍ନମାମୁଁ" ଓ "ମଧୁକୋଷ" ଶିଶୁସାହିତ୍ୟ ସୃଷ୍ଟି କ୍ଷେତ୍ରରେ ବିଶେଷ ସହାୟକ ହୋଇଥିଲା ।

ସତ୍ୟବାଦୀ ଯୁଗର କୃତବିଦ୍ୟ ଲେଖକମାନଙ୍କର ଶିଶୁ ସାହିତ୍ୟର ବିକାଶରେ ଯଥେଷ୍ଟ ଅବଦାନ ରହିଛି । ଗୋପବନ୍ଧୁଙ୍କ "ଧର୍ମପଦ", ନୀଳକଣ୍ଠଙ୍କ "ପିଲଙ୍କ ରାମାୟଣ" ଓ "ମହାଭାରତ" ଓ ଗୋଦାବରୀଶଙ୍କ "କଳିକା", "କିଶଳୟ", "ଆଲେଖିକା", "ଚୟନିକା", "ଗୀତିଗୁଚ୍ଛ", "ପିଲଙ୍କ କାହିଁକି" ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ । ବିଶେଷତଃ ଏ କ୍ଷେତ୍ରରେ କୃତୀ ଶିକ୍ଷକ ଗୋଦାବରୀଶଙ୍କ କୃତିତ୍ୱ ଅସାଧାରଣ । ଶିଶୁ ମନସ୍ତତ୍ତ୍ୱ, ତାର ଭାଷା, ଭାବ, କୌତୂହଳ ପ୍ରଭୃତି ତାଙ୍କ ସୃଷ୍ଟିଗୁଡ଼ିକୁ କରିଛି ଅତି ମନୋଜ୍ଞ ଓ ଚିତ୍ତାକର୍ଷକ ।

## ଶିଶୁସାହିତ୍ୟରେ ନୂତନ ଦିଗନ୍ତ :

ଜାତୀୟକବି ବୀରକିଶୋର ଶିଶୁସାହିତ୍ୟ ଦରବାରରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ । ତାଙ୍କ ଲିଖିତ "ବୀର ସୈନିକ", "ମୋ ବହି", "ଛବି ବହି" ପ୍ରଭୃତି ଶିଶୁସାହିତ୍ୟର ଏକ ଏକ ଅମୂଲ୍ୟ ସୃଷ୍ଟି । ତାଙ୍କ ସମ୍ପାଦିତ "ମୋ ଦେଶ" ଶିଶୁସାହିତ୍ୟ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ମାୟାଧର ମାନସିଂହ, ପ୍ରାଣକୃଷ୍ଣ ପରିଜା, ବିରଜା ମୋହନ ସେନାପତି, ଅଧିରଜ ମୋହନ ସେନାପତି, କାଳିନ୍ଦୀଚରଣ ପାଣିଗ୍ରାହୀ ପ୍ରମୁଖ ସାହିତ୍ୟିକଗଣ ଓଡ଼ିଆ ଶିଶୁସାହିତ୍ୟକୁ ପରିପୁଷ୍ଟ କରିଛନ୍ତି ।

ଗୋଦାବରୀଶ ମହାପାତ୍ରଙ୍କ "ମୋ ଖେଳସାଥୀ", "ସବୁ କାଳର ଗଳ୍ପ", "ଛବିର କବିତା" ଶିଶୁସାହିତ୍ୟର ଅନବଦ୍ୟ ସୃଷ୍ଟି । ତାଙ୍କର ସମ୍ପାଦିତ "ଟୁଆଁ ଟୁଇଁ" ପତ୍ରିକା ଶିଶୁ ଓ କିଶୋରମାନଙ୍କର ପ୍ରିୟ ହେବା ସଙ୍ଗେ ସଙ୍ଗେ ନୂତନ ଲେଖକ ସୃଷ୍ଟିରେ ସହାୟକ ହୋଇଥିଲା । ଚକ୍ରଧର ମହାପାତ୍ର, ଆର୍ତ୍ତତ୍ରାଣ ମିଶ୍ର, ରଘୁନାଥ ମହାପାତ୍ର, ଲଳ ନଗେନ୍ଦ୍ର କୁମାର ରାୟ, ଶିବ ପ୍ରସାଦ ଦାଶ ପ୍ରମୁଖ ଶିଶୁ ଉପଯୋଗୀ କବିତା, ଜୀବନୀ ଓ ଗଳ୍ପ ରଚନା କରିଥିଲେ ।

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ, ରାମକୃଷ୍ଣ ନନ୍ଦ, ଉଦୟନାଥ ଷଡ଼ଙ୍ଗୀ, କୁଞ୍ଜବିହାରୀ ଦାଶ, କାଳୀଚରଣ ପଟ୍ଟନାୟକ, ରାମପ୍ରସାଦ ମହାନ୍ତି, କୃଷ୍ଣଚନ୍ଦ୍ର କର, ପ୍ରାଣବନ୍ଧୁ କର, ଚିତ୍ତରଞ୍ଜନ ଦାସ, ବିଦ୍ୟୁତପ୍ରଭା ଦେବୀ, ଗୋପାଳଚନ୍ଦ୍ର ମିଶ୍ର, ଗୋଲକବିହାରୀ ଧଳ, ଜାନକୀବଲ୍ଲଭ ମହାନ୍ତି ପ୍ରମୁଖ ଶିଶୁସାହିତ୍ୟ ରଚନାରେ ସିଦ୍ଧହସ୍ତ । ଗୋକୁଳାନନ୍ଦ ମହାପାତ୍ର, କୁଳମଣି ସାମଲ, ଶାନ୍ତନୁ ଆଚାର୍ଯ୍ୟ, ସୂର୍ଯ୍ୟମଣି ବେହେରା, ଦେବକାନ୍ତ ମିଶ୍ର, ବସନ୍ତ ବେହୁରା, ନରେନ୍ଦ୍ର ବୋଷ ପ୍ରମୁଖ ବିଜ୍ଞାନର ବିଭିନ୍ନ ବିଭବରେ ଲେଖି ସଫଳତା ଲାଭ କରିଛନ୍ତି । ବୀରକିଶୋର ପାଢ଼ୀ, ଭଗବାନ ପାଢ଼ୀ, ବାଞ୍ଛାନିଧି ଦାଶ, ଅନନ୍ତ ପଟ୍ଟନାୟକ, ବିନୋଦ ରାଉତରାୟ, ନିକୁଞ୍ଜ କାନୁନଗୋ, ମହେଶ୍ୱର ମହାନ୍ତି, ପ୍ରସନ୍ନ ମିଶ୍ର, ଜଗନ୍ନାଥ ମହାନ୍ତି, ସ୍ନେହଲତା ମହାନ୍ତି, ଶକୁନ୍ତଳା ପଣ୍ଡା, ମହେଶ୍ୱର ମୁଳିଆ, ପୁଣ୍ୟପ୍ରଭା ଦେବୀ, ନନ୍ଦକିଶୋର ସିଂହ, କୁମୁଦିନୀ ଦେବୀ, କ୍ଷୀରୋଦଚନ୍ଦ୍ର ପୋଥାଳ, ବାମନ ଚରଣ ମିଶ୍ର, ଜୟକୃଷ୍ଣ ସାହୁ, ବଟକୃଷ୍ଣ ଓଝା, ରଘୁନାଥ ରାଉତ, ରମେଶ ଭଞ୍ଜ, ଦେବରାଜ ସାମନ୍ତରାୟ, ବୀରକିଶୋର ଦାସ, ନଟବର ସାହୁ, ବୀରେନ୍ଦ୍ର ସାମନ୍ତରାୟ, ପ୍ରଫୁଲ୍ଲ ଗିରି, ମନୋଜ ଦାସ, ବିଭୂତି ପଟ୍ଟନାୟକ, ଶୁଭେନ୍ଦୁ ଶ୍ରୀଚନ୍ଦନସିଂହ, ରାମଚନ୍ଦ୍ର ମହାନ୍ତି, ଚକ୍ରଧର ବେହେରା, ମନୋରମା ମହାପାତ୍ର, ଅମରେନ୍ଦ୍ର ଗିରି ପ୍ରମୁଖ ଶିଶୁସାହିତ୍ୟର ବିଭିନ୍ନ ବିଭବରେ କୃତିତ୍ୱ ପ୍ରଦର୍ଶନ କରିଛନ୍ତି ।

## ସାଂପ୍ରତିକ ଶିଶୁସାହିତ୍ୟରେ ବହୁମୁଖୀ ବିକାଶ :

ସଂପ୍ରତି ଶିଶୁସାହିତ୍ୟର ଉନ୍ନତି ପାଇଁ ବହୁମୁଖୀ ଉଦ୍ୟମ ହେଉଛି । ବହୁ ଶିଶୁ ପତ୍ରିକାର ପ୍ରକାଶନ ଏ ଦିଗରେ ଏକ ଉଲ୍ଲେଖଯୋଗ୍ୟ ପ୍ରଚେଷ୍ଟା । ଶିଶୁଲେଖା, ମନପବନ, ସଂସାର, ନନ୍ଦନକାନନ ପ୍ରଭୃତି ଅଳ୍ପ କେତୋଟି ପତ୍ରିକାକୁ ଛାଡ଼ିଦେଲେ ଅନ୍ୟଗୁଡ଼ିକର ସମ୍ପାଦନା ବହୁ ଉନ୍ନତି ସାପେକ୍ଷ । ମାତ୍ର କେତେକ ପତ୍ରିକା ୨।୩ ବର୍ଷ ଧରି ରାଜ୍ୟସ୍ତରୀୟ ଶିଶୁସାହିତ୍ୟ-ସମ୍ମିଳନୀର ଆୟୋଜନ କରି ପ୍ରଶଂସାର୍ହ ହୋଇଛନ୍ତି ।

ଡକ୍ଟର ମନୀନ୍ଦ୍ର ମହାନ୍ତି ନିଜେ ଓଡ଼ିଆ ଶିଶୁ ସାହିତ୍ୟର ପ୍ରଥମ ଗବେଷକ ହେବା ସଙ୍ଗେ ସଙ୍ଗେ "ଶିଶୁସାହିତ୍ୟ ଗବେଷଣା ପରିଷଦ" ମାଧ୍ୟମରେ ଶିଶୁ ସାହିତ୍ୟ ଲେଖକ ଓ ସଂପାଦକଙ୍କ ତାଲିମ, ଆଲୋଚନା ଓ ଗବେଷଣାର ବ୍ୟବସ୍ଥା କରି ଅଭିନନ୍ଦନୀୟ ହୋଇଛନ୍ତି । ଗତବର୍ଷ ଠାରୁ "ଶିଶୁସାହିତ୍ୟ ଏକାଡେମୀ" ନାମକ ଏକ ରାଜ୍ୟସ୍ତରୀୟ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଅଛି । ଶିଶୁସାହିତ୍ୟ କ୍ଷେତ୍ରରେ ଏକ ବୌଦ୍ଧିକ ଆଭିମୁଖ୍ୟ ଓ ନେତୃତ୍ୱ ଦେବା ଏହାର ଲକ୍ଷ୍ୟ । ଗବେଷଣା, ପ୍ରଶିକ୍ଷଣ, ପ୍ରକାଶନ, ସମ୍ପାଦନ ପ୍ରଭୃତିର ଆୟୋଜନ କରି ଶିଶୁ ସାହିତ୍ୟର ସର୍ବାଙ୍ଗୀନ ଉନ୍ନତି ପାଇଁ ଏହା କାର୍ଯ୍ୟ କରିପାରିବ । ଅନେକ ତରୁଣ ଓ ଯୁବ ଶିଶୁସାହିତ୍ୟିକ ଓ ସମ୍ପାଦକ ଶିଶୁସାହିତ୍ୟ କ୍ଷେତ୍ରରେ ଉଜ୍ଜ୍ୱଳ ସମ୍ଭାବନା ଓ ପ୍ରତିଭାର ସୂଚନା ଦେଇଛନ୍ତି । ସେମାନଙ୍କୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ସମୂହ ସହଯୋଗ, ସଦିଚ୍ଛା ଓ ଆସ୍ଥାଭାଜନ ହୋଇ ଏହି ଅନୁଷ୍ଠାନ କାର୍ଯ୍ୟ କରିପାରିଲେ ବହୁ ସମସ୍ୟାର ସମାଧାନ ହେବ ଓ ଶିଶୁସାହିତ୍ୟର ଆଶାନୁରୂପ ଅଭ୍ୟୁଦୟ ଘଟିବ । ●

# ଆଜିର ଓଡ଼ିଆ ଶିଶୁସାହିତ୍ୟ ଓ ଶିଶୁସାହିତ୍ୟିକ

ଶ୍ରୀ ଚକ୍ରଧର ବେହେରା

## ଶିଶୁସାହିତ୍ୟ କ'ଣ ?

ଯେଉଁ ସାହିତ୍ୟ ଶିଶୁ ପାଇଁ ଉଦ୍ଦିଷ୍ଟ ତାହା ହିଁ ଶିଶୁ-ସାହିତ୍ୟ । ଶିଶୁ ଯେତେବେଳେ ତା ନିଜର ଭାଷା ବୁଝି-ପାରେ ଓ ଦଉରେଟି କଥାରେ ତା' ମନର ଭାଷା ପ୍ରକାଶ କରିବାକୁ ଆରମ୍ଭ କରେ ସେହି ସମୟରୁ ହିଁ ତା' ପାଇଁ ସାହିତ୍ୟ ସୃଷ୍ଟିର ଆବଶ୍ୟକତା ଅନୁଭୂତ ହୁଏ । ସେ ସେତେ-ବେଳେ ତା' ସାହିତ୍ୟକୁ ପଢ଼ିପାରେ ନାହିଁ ସିନା କିନ୍ତୁ ବୁଝିପାରେ ଓ ଶୁଣି ଶୁଣି ମନେ ରଖିପାରେ । ଏଇଥି ଯୋଗୁ ଶିଶୁସାହିତ୍ୟ ପ୍ରଥମରୁ ହିଁ ଦୁଇଭାଗରେ ବିଭକ୍ତ ହୋଇଯାଏ ଯଥା :—ଶିଶୁକୁ ପଢ଼ି ଶୁଣାଇବା ଲାଗି ସାହିତ୍ୟ ଓ ଶିଶୁ ତା' ନିଜ ଜ୍ଞାନରେ ନିଜେ ପଢ଼ି ପାରୁଥିବା ସାହିତ୍ୟ ।

ସମୀକ୍ଷାରୁ ଯାହା ଜଣାଯାଇଛି ଓଡ଼ିଆ ଶିଶୁ-ସାହିତ୍ୟର ଏହି ଦୁଇଟିଯାକ ବିଭାଗ ଅତ୍ୟନ୍ତ ଦୁର୍ବଳ । ଶିଶୁକୁ ଶୁଣାଇବା ପାଇଁ ଆମେ ଏଯାଏ ସାହିତ୍ୟ ସୃଷ୍ଟି କରି ପାରିନାହୁଁ କି ତା ହାତରେ ତା ମନ ମୁତାବକ ସାହିତ୍ୟ ପତ୍ରିକା ଖଣ୍ଡେ ଧରାଇ ପାରିନାହୁଁ । ଏବେ ଏ ପ୍ରଦେଶରେ ଯେଉଁ ଶିଶୁପତ୍ରିକାଗୁଡ଼ିକ ଦେଖିବାକୁ ମିଳୁଛି ତାହା ନଅରୁ ପନ୍ଦର ବର୍ଷ ବୟସ ପର୍ଯ୍ୟନ୍ତ ପିଲାଙ୍କ ପାଇଁ ପ୍ରାୟ ଲିଖିତ ଏବଂ ସେଗୁଡ଼ିକୁ ଶିଶୁସାହିତ୍ୟ ନ କହି କିଶୋର ସାହିତ୍ୟ ବୋଲି କହିବା ଅଧିକ ସମୀଚୀନ ହେବ । ତେଣୁ ତିନିରୁ ଆଠବର୍ଷର ପିଲାଙ୍କ ପାଇଁ ଆମେ ପ୍ରକୃତରେ ଏଯାଏ ସେମାନଙ୍କ ପଢ଼ିବା ପାଇଁ ହେଉ କି ଶୁଣିବା ପାଇଁ ହେଉ ସେଭଳି ଶିଶୁସାହିତ୍ୟ ସୃଷ୍ଟି କରିପାରି ନାହୁଁ ।

## ପ୍ରାଚୀନ ଶିଶୁସାହିତ୍ୟ :

ପ୍ରାଚୀନ କାଳରେ ଓଡ଼ିଆ ସାହିତ୍ୟ ପରି ଓଡ଼ିଆ ଶିଶୁସାହିତ୍ୟ ମଧ୍ୟ ଲୋକମୁଖରେ ଗୀତ ବା କାହାଣୀ ଆକାରରେ ପ୍ରଚଳିତ ଥିଲା । ପୃଥିବୀର ବିଭିନ୍ନ ଦେଶର ପ୍ରାଚୀନ ଜାନାବାୟା ଗୀତ ବା Nursery Rhyme ପରି ଲୋକମୁଖରେ ପ୍ରଚଳିତ ଓଡ଼ିଆ ଭାଷାର ଏହି ଶିଶୁ-ସାହିତ୍ୟ ଯେ ଏକଦା ଋଦ୍ଧିମନ୍ତ ଥିଲା ଏହାର ଅନେକ ଉଦାହରଣ ଦିଆଯାଇ ପାରେ । ଯଥା :—

ଆ ଜହ୍ନମାମୁଁ ସରଗଶଶୀ
ମୋ କାହ୍ନୁ ହାତରେ ପଡ଼ରେ ଖସି

କିମ୍ବା

ଝୁଲରେ ହାତୀ ଝୁଲ
ବାଆ ପାଣି ଖାଇ ଫୁଲ୍

ସେହିପରି

ଧୋ'ରେ ବାଇଆ ଧୋ
ଯେଉଁ କିଆରୀରେ ଗହଳ ମାଣ୍ଡିଆ
ସେହି କିଆରୀରେ ଶୋ ।

କିମ୍ବା

ଛିଚିଡ଼ି ମିଚିଡ଼ି ଧାଇଁ ଚିଡ଼ି ଚିଡ଼ି
କାଇଁଚ କାକୁଡ଼ି ପିତା ନଳିତା...ଇତ୍ୟାଦି ।

ଗଳ୍ପଗୁଡ଼ିକ ମଧ୍ୟରେ କଲୁରେଇ ବେଙ୍ଗ କଥା, କଞ୍ଚନ ଫୁଲ କଥା, ଚକୁଳିଆ ପଣ୍ଡା କଥା, ସାହାଡ଼ା ସୁନ୍ଦରୀ କଥା ପ୍ରଭୃତି କେତେକ କାହାଣୀ ଅବୈଜ୍ଞାନିକ ହେଲେ ମଧ୍ୟ

ପିଲାଙ୍କ ପାଇଁ ଯେପରି ବୋଧଗମ୍ୟ ସେହିପରି ମନୋରଞ୍ଜକ ମଧ୍ୟ ଥିଲା । ଗଳ୍ପର ଆରମ୍ଭରେ 'କଥାଟିଏ କହୁଁ, କଥାଟିଏ, କିସ କଥା, ବେଙ୍ଗୁଲି କଥା' ଇତ୍ୟାଦି ଉପକ୍ରମ ଶିଶୁର ମନକୁ ଯେପରି ଗଳ୍ପ ପ୍ରତି ଆକୃଷ୍ଟ କରି ପାରୁଥିଲା, ଗଳ୍ପର ଉପସଂହାରରେ 'ମୋ କଥାଟି ସରିଲା ଫୁଲଗଛଟି ମଲା' ଇତ୍ୟାଦି ସେହିପରି ଶିଶୁ ପ୍ରାଣକୁ ସାନ୍ତ୍ୱନାରେ ଭରି ଦେଉଥିଲା । କିନ୍ତୁ ଲୋକମୁଖରେ ପ୍ରଚଳିତ ସେଦିନର ଏହି ଶିଶୁ-ଗପ ଓ କାହାଣୀ ଗାଁଗହଳମାନଙ୍କରେ ଆଉ ପ୍ରାୟ ନାହିଁ କହିଲେ ଚଳେ ।

ଲୋକମୁଖରେ ପ୍ରଚଳିତ ଏହିସବୁ କାହାଣୀ ଓ କବିତା ନିଭି ନିଭି ଆସୁଥିବା ବେଳେ ଜାତକ, ଉପନିଷଦ, ରାମାୟଣ, ମହାଭାରତ ଓ ଇତିହାସର ଗଳ୍ପ ଧୀରେ ଧୀରେ ଶିଶୁ-ସାହିତ୍ୟର ପରିଧି ଭିତରକୁ ପ୍ରବେଶ କରିଥିବାର ଅନୁମିତ ହୁଏ । ଏହି ସମୟ ମଧ୍ୟରେ ଶିଶୁସାହିତ୍ୟକୁ ଗଢି ତୋଳିବା ଦିଗରେ ମଧୁସୂଦନ ରାଓ, ନନ୍ଦକିଶୋର ବଳ ପ୍ରଭୃତି ଯନାମଧନ୍ୟ ସାହିତ୍ୟିକ ଉଦ୍ୟମ କରିଥିଲେ ହେଁ ସେମାନେ ଏ କ୍ଷେତ୍ରରେ ଯଶସ୍ୱୀ ହୋଇପାରି ନାହାନ୍ତି । ନନ୍ଦକିଶୋରଙ୍କର "ଡାମରା କାଉରେ ଡାମରା କାଉ..." "ମେଘ ବରଷିଲା ଟପର ଟପର କେଶୁର ମାଇଲା ରଜା..." ପ୍ରଭୃତି କେତୋଟି ସୃଷ୍ଟିକୁ ବାଦ ଦେଲେ ଅନ୍ୟଗୁଡ଼ିକ ସଫଳତାର ସ୍ୱାକ୍ଷର ବହନ କରିଥିବା ପରି ମନେହୁଏ ନାହିଁ । ମଧୁସୂଦନ ରାଓଙ୍କ ଶିଶୁ ସାହିତ୍ୟ ନୀତିଶିକ୍ଷା ଓ ଉପଦେଶଗୁଡ଼ିକରେ ଭାରାକ୍ରାନ୍ତ ପରି ଜଣାପଡ଼େ ।

ଶିଶୁସାହିତ୍ୟରେ ଏଇ ଅଭାବ ଥିବା ଉପଲବ୍ଧି କରି ପରବର୍ତ୍ତୀ କାଳରେ ଏହାକୁ ସମୃଦ୍ଧ କରି ଗଢି ତୋଳିବା ପାଇଁ ଯେ ଚେଷ୍ଟା କରା ନ ଯାଇଛି ତାହା ନୁହେଁ, କିନ୍ତୁ ଏହା ସମୁଦ୍ରକୁ ଶଙ୍ଖେ ପାଣି ସଙ୍ଗେ ସମାନ କୁହାଯାଇ ପାରେ । ଶିଶୁ ଶଙ୍ଖାଳି, ଟୁଆଁ ଟୁଇଁ, ଶିଶୁ ସଂସାର ପ୍ରଭୃତି କେତୋଟି ଶିଶୁ ପତ୍ରିକା ଶିଶୁସାହିତ୍ୟର ବିକାଶ କ୍ଷେତ୍ରରେ ଗୋଟିଏ ଗୋଟିଏ ମାଇଲ୍ ଖୁଣ୍ଟ ସୃଷ୍ଟି କରିଥିଲେହେଁ ଉପଯୁକ୍ତ ପରିଚାଳନା, ସଂପାଦନା ଓ ପୃଷ୍ଠପୋଷକତା ଅଭାବରୁ ତାହାର ବିଲୟ ଘଟିଲା । କିନ୍ତୁ ସାହିତ୍ୟିକର ବିରାମହୀନ ଉଦ୍ୟମ ଶିଶୁସାହିତ୍ୟକୁ ଲୋପ ହୋଇଯିବା ପାଇଁ ଦେଇନାହିଁ । କେବଳ ସେହି ପ୍ରଚେଷ୍ଟାର ଫଳ ସ୍ୱରୂପ ଜନ୍ମ ନେଲା ଆସନ୍ତାକାଲି ପୃଷ୍ଠାରେ 'କିଶୋର ସଂସାର', ପ୍ରଜାତନ୍ତ୍ର ପୃଷ୍ଠାରେ 'ମୀନା ବଜାର', ସମାଜ ପୃଷ୍ଠାରେ 'ଶିଶୁରାଇଜ', କଳିଙ୍ଗ ପୃଷ୍ଠାରେ 'ଉଦୟଭାନୁ', ସୌରଭ ପୃଷ୍ଠାରେ 'ଇନ୍ଦ୍ରଧନୁ' ଇତ୍ୟାଦି । ଏହି ସନ୍ଧିକ୍ଷଣରେ 'ମନପବନ' ମଧ୍ୟ ଆତ୍ମପ୍ରକାଶ କରି ଓଡ଼ିଆ ଶିଶୁସାହିତ୍ୟକୁ ପରିପୁଷ୍ଟ କରି ଗଢି ତୋଳିବା ଦିଗରେ ବ୍ରତୀ ହେଲା ।

## ଆଜିର ଶିଶୁସାହିତ୍ୟ :

ମାତ୍ର ବିଗତ ଦଶନ୍ଧି ମଧ୍ୟରେ ଓଡ଼ିଶାରେ ଶିଶୁ-ସାହିତ୍ୟ ପତ୍ରିକାର ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇବାରେ ଲାଗିଛି । ଶିଶୁସାହିତ୍ୟ ଗବେଷକ ଡଃ ମନୀନ୍ଦ୍ର ମହାନ୍ତିଙ୍କ ଗବେଷଣାରୁ ଏହି ପତ୍ରିକାଗୁଡ଼ିକର ସଂଖ୍ୟା ବର୍ତ୍ତମାନ ଅର୍ଦ୍ଧ ଶତକରୁ ଅଧିକ ବୋଲି ଜଣାଯାଇଛି ।

ଶିଶୁସାହିତ୍ୟ ପତ୍ରିକାର ବହୁଳ ପ୍ରସାର ଓ ଶିଶୁ ସାହିତ୍ୟର ଉନ୍ନତି ଏ ଦୁଇଟି ଏକାକଥା ନୁହେଁ । ବିଭିନ୍ନ ଶିଶୁ ପତ୍ରିକା ପାଠକରି ଯାହା ଅନୁଭୂତି ମିଳିଛି ସେଥିରୁ ଜଣାଯାଇଛି ଯେ ଆମର ଓଡ଼ିଆ ଶିଶୁସାହିତ୍ୟ ଏବେବି ତା'ର ନିଜସ୍ୱ ଗୌରବରେ ମଣ୍ଡିତ ହେବାକୁ ଆହୁରି ଅନେକ ସମୟ ବାକି ଅଛି । (ତିନିବର୍ଷ ଠାରୁ ଆଠବର୍ଷ ବୟସର ପିଲାଙ୍କ ପାଇଁ ଶିଶୁ ସାହିତ୍ୟ ରଚନା ପ୍ରାୟ ନାହିଁ । ନ'ବର୍ଷରୁ ପନ୍ଦର ବର୍ଷ ବୟସର ପିଲାଙ୍କ ପାଇଁ ଯେଉଁ ଶିଶୁ ସାହିତ୍ୟ ବର୍ତ୍ତମାନ ସୃଷ୍ଟି ହେଉଛି ତାହା ମଧ୍ୟ ବୟସ ଉପଯୋଗୀ ହୋଇ ପାରୁନାହିଁ । ପୁନଶ୍ଚ ତନ୍ମଧ୍ୟରୁ ଅନେକ ସୃଷ୍ଟି ଶିଶୁସାହିତ୍ୟର ମୌଳିକତାରେ ମଧ୍ୟ ମୂଲ୍ୟବାନ୍ ନୁହେଁ ।)

ଯାହା ତାହା ଲେଖିଦେଲେ ଶିଶୁସାହିତ୍ୟ ହୁଏ ନାହିଁ । ଶିଶୁସାହିତ୍ୟ ସୃଷ୍ଟି କରିବାକୁ ହେଲେ ସ୍ରଷ୍ଟାକୁ ବିଭିନ୍ନ ଦିଗ ପ୍ରତି ଦୃଷ୍ଟି ଦେବାକୁ ପଡ଼େ । ବିଶେଷକରି ଶିଶୁର ମନସ୍ତତ୍ତ୍ୱ, ଚରିତ୍ର ଗଠନ ଓ ସାମାଜିକ ସମସ୍ୟା

ସଚେତନତା ପ୍ରତି ଅଧିକ ଗୁରୁତ୍ୱ ଦେବାକୁ ହୋଇଥାଏ । ଶିଶୁ ତା'ର ଦୈନନ୍ଦିନ ଜୀବନରେ ଯାହା ଦେଖୁଛି, ଯାହା ସଂସର୍ଶରେ ଆସୁଛି ଏବଂ ତା' ମନଭିତରେ ଯେଉଁ ନବ ଜିଜ୍ଞାସା ମୁଣ୍ଡ ଟେକୁଛି ତାହା ହିଁ ଶିଶୁ ସାହିତ୍ୟରେ ସ୍ଥାନ ପାଇବା କଥା । ମାତ୍ର ତାହା ଆଦୌ ହେଉ ନାହିଁ । ପୁନଶ୍ଚ ଶିଶୁ ସାହିତ୍ୟକୁ ସମୟୋପଯୋଗୀ କରିବାକୁ ହେଲେ ପ୍ରାଚୀନ କାଳର 'ପାକୋଇ ଆଇମା' ତୁଣ୍ଡର ସେହି ପ୍ରାଚୀନ ଲୋକକଥା ଓ ଲୋକଗୀତି ଢଙ୍ଗରେ ସରଳ ସହଜ ଭାଷାରେ ବାସ୍ତବ ଚିନ୍ତା ଓ ଚେତନା ଦେଇ ଶିଶୁ ସାହିତ୍ୟକୁ ସମୃଦ୍ଧିଶାଳୀ କରି ଗଢି ତୋଳିବା ସର୍ବାଦୌ ବାଞ୍ଛନୀୟ । ଅବାସ୍ତବ କାହାଣୀ କବିତା ଶୁଣାଇ ଭୂତପ୍ରେତ ଏପରିକି ଧର୍ମ ଧାରଣା ଜନ୍ମାଇ ଶିଶୁର ସରଳ ମନକୁ ଅଯଥା ଭୟକ୍ରାନ୍ତ କରିବା ଆଦୌ ସ୍ପୃହଣୀୟ ନୁହେଁ । ଏପରି କଲେ ଶିଶୁର ମନ ଠିକ୍ ଭାବରେ ବିକାଶ ଲାଭ କରି ପାରେ ନାହିଁ, ପରନ୍ତୁ ଏହା ଶିଶୁକୁ ଭୀରୁ, ଅନ୍ଧବିଶ୍ୱାସୀ, କୁସଂସ୍କାରବିଳାସୀ କରି ଗଢି ତୋଳିଥାଏ । କିନ୍ତୁ ଏ ସବୁ ରୀତି ଏବେ ବି ଏକ ଗଡ୍ଡାଳିକା ପ୍ରବାହରେ ପୂର୍ବପରି ଗଡ଼ି ଗଡ଼ି ଚାଲିଛି । ଏହି ସ୍ରୋତକୁ ଏକ ନୂତନ ମୋଡ଼ ଦେଇ ଶିଶୁ ସାହିତ୍ୟକୁ ବଳିଷ୍ଠ କରି ଗଢ଼ି ତୋଳିବା ଦିଗରେ ଶିଶୁ ସାହିତ୍ୟ ପତ୍ରିକାର ସଂପାଦକ କିମ୍ବା ନିଜେ ଶିଶୁ ସାହିତ୍ୟିକ ଆନ୍ତରିକତା ପ୍ରଦର୍ଶନ କରିବାରେ ବ୍ୟର୍ଥ ହୋଇଛନ୍ତି । କେବଳ ନୂତନ କରି ପ୍ରକାଶ ପାଉଥିବା ଶିଶୁ ସାହିତ୍ୟ ପତ୍ରିକା 'ଉଦୟ ରବି'କୁ ବାଦ ଦେଲେ ଅନ୍ୟାନ୍ୟ ସୁପ୍ରତିଷ୍ଠିତ ଶିଶୁ ପତ୍ରିକା ଗୁଡ଼ିକରେ ପ୍ରକାଶିତ କାହାଣୀ, କବିତାରେ ନୂତନ ଦୃଷ୍ଟିଭଙ୍ଗି ନାହିଁ କହିଲେ ଚଳେ । ସଂପାଦକମାନେ ସମୟର ଆବଶ୍ୟକତାକୁ ବୁଝି ଯଦି ଲେଖକ ଲେଖିକାମାନଙ୍କୁ ସଂପାଦକୀୟ ପୃଷ୍ଠାରେ ଶିଶୁ ସାହିତ୍ୟର ଆଭିମୁଖ୍ୟ ସଂପର୍କରେ ସୂଚନା ଦିଅନ୍ତେ ତେବେ ଏହାର ଅଭାବ ଅନେକାଂଶରେ ଦୂର ହୋଇ ପାରନ୍ତା ।

## ଶିଶୁ ସାହିତ୍ୟିକ ଓ ସେମାନଙ୍କର ସୃଷ୍ଟି :

ଶିଶୁ ସାହିତ୍ୟ ପତ୍ରିକା ପରି ଓଡ଼ିଶାରେ ଏବେ ଅନେକ ଶିଶୁ ସାହିତ୍ୟିକମାନଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଅବଶ୍ୟ ଏହା ଶୁଭ ଲକ୍ଷଣ । ମାତ୍ର ଏଠାରେ ପ୍ରଶ୍ନ ଉଠେ ଯେ, ଏହି ଶିଶୁ ସାହିତ୍ୟିକ ବନ୍ଧୁମାନେ କି ପ୍ରକାର ସାହିତ୍ୟ ସୃଷ୍ଟି କରୁଛନ୍ତି ? ଶିଶୁ ସାହିତ୍ୟ ସୃଷ୍ଟି ପାଇଁ ଲେଖକ ଲେଖନୀ ଧରିବା ପୂର୍ବରୁ ତା'ର ଚିନ୍ତା କରିବା ଉଚିତ ଯେ ସେ କ'ଣ ଲେଖିବାକୁ ଯାଉଛି, କାହା ପାଇଁ ଲେଖିବାକୁ ଯାଉଛି ଓ ତା'ର ସେହି ଲେଖା ପଢ଼ି ଶିଶୁ କେତେଦୂର ଉପକୃତ ହୋଇ ପାରିବ । ପୂର୍ବର ସେହି ବାକ୍ୟଟିକୁ ପୁନଶ୍ଚ ଉଦ୍ଧାର କରି କୁହା ଯାଇପାରେ– 'ଯାହା ତାହା ଲେଖିଦେଲେ ଶିଶୁ ସାହିତ୍ୟ ହୁଏ ନାହିଁ ।' କିନ୍ତୁ ଅଧିକାଂଶ ଶିଶୁ ସାହିତ୍ୟିକଙ୍କର ଧାରଣା ଯାହା ତାହା ଲେଖଦେଲେ ସାହିତ୍ୟ ସିନା ହୋଇ ପାରିବ ନାହିଁ, କିନ୍ତୁ ଶିଶୁ ସାହିତ୍ୟ ହୋଇ ପାରିବ । ମାତ୍ର ଏପରି ଧାରଣା ବାସ୍ତବିକ ଭୟଙ୍କର ଭାବେ କ୍ଷତିକାରକ ଅଟେ । ଶସ୍ତା ନାମ ନେବା ପାଇଁ ଏପରି ଧାରଣା ପୋଷଣ କରଯାଇ ପାରେ, ମାତ୍ର ସଫଳ ସ୍ରଷ୍ଟା ଭାବେ ସୁନାମ ଅର୍ଜନ କରିବାକୁ ହେଲେ ଏପରି ଧାରଣାକୁ ପ୍ରଥମରୁ ହିଁ ବର୍ଜନ କରିବାକୁ ହେବ ।

ସାଂପ୍ରତିକ ଓଡ଼ିଆ ଶିଶୁ ସାହିତ୍ୟକୁ ଅବଦାନ କ୍ଷେତ୍ରରେ ସର୍ବଶ୍ରୀ ରାମକୃଷ୍ଣ ନନ୍ଦ, ଉଦୟନାଥ ଷଡ଼ଙ୍ଗୀ, ପଣ୍ଡିତ ଉପେନ୍ଦ୍ର କୁମାର ତ୍ରିପାଠୀ, ନଦିୟାବିହାରି ମହାନ୍ତି, କ୍ଷୀରୋଦ ଚନ୍ଦ୍ର ପୋଥାଳ, ବଟକୃଷ୍ଣ ଓଝା, ବୀରେନ୍ଦ୍ର କୁମାର ସାମନ୍ତରାୟ, ଭଗବାନ ପାଢ଼ୀ, ପଠାଣି ପଟ୍ଟନାୟକ, ନନ୍ଦକିଶୋର ସିଂହ, ଅନନ୍ତ ପଟ୍ଟନାୟକ, ରାମପ୍ରସାଦ ମହାନ୍ତି, ମହେଶ୍ୱର ମହାନ୍ତି, ପ୍ରଫୁଲ୍ଲ କୁମାର ଗିରି, ସୂର୍ଯ୍ୟମଣି ବେହେରା, ରମେଶଚନ୍ଦ୍ର ଭଂଜ, ଉପେନ୍ଦ୍ର କୁମାର ଜେନା, ମାୟାଧର ସାହୁ, ନିକୁଞ୍ଜକିଶୋର କାନୁନ୍‌ଗୋ, ନିତ୍ୟାନନ୍ଦ ଷଡ଼ଙ୍ଗୀ, ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନସିଂହ, ଆନନ୍ଦଚନ୍ଦ୍ର ପହି, ରଘୁନାଥ ରାଉତ,

ଦିଗ୍‌ରାଜ ବ୍ରହ୍ମା, ପ୍ରକାଶଚନ୍ଦ୍ର ରଥ, ବଗୁଲିଆ ବିବୁଧରଞ୍ଜନ, ଅପୂର୍ବରଞ୍ଜନ ରାୟ, ମନୋରମା ମହାପାତ୍ର, ମହେଶ୍ୱର ମୁଳିଆ, ବଟକୃଷ୍ଣ ସାହୁ, ପ୍ରୀତିପଦ୍ମା ରାଉତ, ସୁନୀଲ ମିଶ୍ର, କାଞ୍ଚନବାଳା ମହାନ୍ତି, ପଙ୍କଜିନୀ ଦାଶ, ଯଦୁନାଥ ଦାଶ-ମହାପାତ୍ର, ରବୀନ୍ଦ୍ରନାଥ ବିଶ୍ୱାଳ, ଡଃ ଜଗନ୍ନାଥ ମହାନ୍ତି, ସୁନାମଣି ରାଉତ, ଡଃ ପ୍ରସନ୍ନ କୁମାର ମିଶ୍ର, ନିରଞ୍ଜନ ବେହେରା, ଅଶୋକ କୁମାର ମହାନ୍ତି, ରବୀନ୍ଦ୍ରନାଥ ମାଝୀ, ପ୍ରଭାକର ବେହେରା, ମାନସରଞ୍ଜନ ସାମଲ, ଲକ୍ଷ୍ମୀନାରାୟଣ ମହାନ୍ତି, ରଜନୀ ରଞ୍ଜନ ଦାଶ, ରାମଚନ୍ଦ୍ର ମହାନ୍ତି, ମୁକ୍ତିକାନ୍ତ ରାୟ, ଉପେନ୍ଦ୍ରନାଥ ମହାପାତ୍ର, ହାଡ଼ିବନ୍ଧୁ ମିଶ୍ର ପ୍ରମୁଖଙ୍କ ପ୍ରତିଷ୍ଠା ଉଲ୍ଲେଖଯୋଗ୍ୟ ବୋଲି ଗ୍ରହଣ କରାଗଲେ ବି ତନ୍ମଧ୍ୟରୁ ଅଧିକାଂଶ ଲେଖକ ଓ ଲେଖିକା ପ୍ରାଚୀନତାର ସେହି ରକ୍ଷଣଶୀଳ ପରିଧି ଭିତରୁ ଏବେ ବି ନିଜକୁ ମୁକ୍ତ କରିପାରି ନାହାନ୍ତି । ସେହି ଗତାନୁଗତିକ ରୀତିରେ ଲେଖନୀ ଚାଳନା ଅବ୍ୟାହତ ରଖିଛନ୍ତି ।

ଉଦୟନାଥ ଷଡ଼ଙ୍ଗୀଙ୍କ ପଶୁପକ୍ଷୀ ସିରିଜ୍ ପିଲାଙ୍କ ପାଇଁ ଖୁବ୍ ଉପାଦେୟ ପୁସ୍ତକ । ରାମକୃଷ୍ଣ ନନ୍ଦ 'ସନାତନ' କବିତା ପରି କେତେକ ଯୁଗାନ୍ତକାରୀ ସୃଷ୍ଟିର ସ୍ରଷ୍ଟା ହେଲେ ବି 'ଆହେ ଦୟାମୟ ବିଶ୍ୱବିହାରି' ପରି କବିତା ଲେଖି ପିଲାଙ୍କୁ ଧର୍ମଭୀରୁ କରି ଗଢ଼ି ତୋଳିବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ପଣ୍ଡିତ ଉପେନ୍ଦ୍ରକୁମାର ତ୍ରିପାଠୀ, କ୍ଷୀରୋଦଚନ୍ଦ୍ର ପୋଥାଳ, ଭଗବାନ ପଣ୍ଡା, ବଟକୃଷ୍ଣ ଓଝା, ରାମପ୍ରସାଦ ମହାନ୍ତିଙ୍କ ସୃଷ୍ଟି ଅନନ୍ୟସାଧାରଣ ହେଲେହେଁ ଠାଏ ଠାଏ ରକ୍ଷଣଶୀଳତାର ବନ୍ଧନୀ ମଧ୍ୟରେ ଆବଦ୍ଧ ଥିବାପରି ମନେ ହୁଏ । 'ଶିଶୁଲେଖା' ପୃଷ୍ଠାରେ ଯଶସ୍ୱୀ-କବି ଅନନ୍ତ ପଟ୍ଟନାୟକଙ୍କର କବିତାଗୁଡ଼ିକ ପ୍ରଗତିର ଲକ୍ଷଣ ବହନ କଲେ ବି ସେଗୁଡ଼ିକ ଶିଶୁର ବୋଧଗମ୍ୟ ହେବାଠାରୁ ଊର୍ଦ୍ଧ୍ୱରେ । ସୁନାମଣି ରାଉତଙ୍କ କବିତା ଶିଶୁ ମନକୁ ଉପଯୁକ୍ତ ଖୋରାକ ଯୋଗାଇ ପାରୁଥିବା ପରି ମନେହୁଏ । ବଟକୃଷ୍ଣ ଓଝାଙ୍କ ଏକାଡ଼େମୀ ପୁରସ୍କୃତ ଶିଶୁକବିତା ପୁସ୍ତକ 'ମୋ କୁନି କୁନି କବିତା' ପରି ମାନସରଂଜନ ସାମଲଙ୍କ ପୁରସ୍କୃତ ଶିଶୁକବିତା ପୁସ୍ତକ 'ଝୁନ୍‌ମୁନ୍' ମୌଳିକତା ରକ୍ଷା ଦିଗରେ ବ୍ୟର୍ଥ ହୋଇଛି ।

## ନବାଗତ ଶିଶୁସାହିତ୍ୟିକ ଓ ସେମାନଙ୍କର ସୃଷ୍ଟି :

ଏବେ ନବାଗତ ଅନେକ ଶିଶୁ ସାହିତ୍ୟିକ ଶିଶୁ-ସାହିତ୍ୟର ପରିଧି ଭିତରକୁ ପଶି ଆସିଥିଲେ ବି ସେମାନଙ୍କ ଆଗରେ ଉପଯୁକ୍ତ ଆଲୋଚନା ସମାଲୋଚନା ବା ସମୀକ୍ଷା ନ ଥିବା ହେତୁ ସେମାନେ ଅନ୍ଧାରଘରେ ବାଡ଼ି ବୁଲାଇଲା ପରି ହୋଇ ଯାହା ମନକୁ ଆସୁଛି ତାହା ଲେଖି ଯାଉଛନ୍ତି । ଯଦି ସେମାନଙ୍କୁ ସମୀକ୍ଷା ମାଧ୍ୟମରେ ସଠିକ୍ ଦିଗଦର୍ଶନ ଦିଆ ଯାଇପାରନ୍ତା ତେବେ ସେମାନେ ହୁଏତ ଆଗାମୀ କାଲି ପାଇଁ ସଫଳ ଶିଶୁସାହିତ୍ୟ ସୃଷ୍ଟି କରିପାରନ୍ତେ ।

ବଡ଼ ସୁଖର କଥା ଏହି ଯେ ଏହି ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ଗତ ଫେବୃଆରୀ ୨୧,୨୨,୨୩ ଓ ୨୪ ତାରିଖ ଏହି ଚାରିଦିନ ଧରି ଡଃ ମନୀନ୍ଦ୍ର ମହାନ୍ତିଙ୍କ ଆବାହନକ୍ରମେ ଭଦ୍ରକ (କୁଆଁସ) ଠାରେ ଏକ ଶିଶୁ ସାହିତ୍ୟିକ କର୍ମଶାଳା ଅନୁଷ୍ଠିତ ହୋଇଯାଇଛି । କହିବାକୁ ଗଲେ ଶିଶୁସାହିତ୍ୟ କ୍ଷେତ୍ରରେ ଦେଖା ଦେଇଥିବା ସମସ୍ୟାର ସମାଧାନ ଦିଗରେ ଏହା ହେଉଛି ପ୍ରଥମ ପଦକ୍ଷେପ । ଡଃ ଜଗନ୍ନାଥ ମହାନ୍ତି, ଡଃ ଅଧିକାରୀ ଶ୍ରୀକାନ୍ତ ଦାସ, ଡଃ କୃଷ୍ଣଚରଣ ବେହେରା, ପ୍ରଖ୍ୟାତ ସାହିତ୍ୟିକ ରାମକୃଷ୍ଣ ନନ୍ଦ, ଲକ୍ଷ୍ମୀନାରାୟଣ ମହାନ୍ତି, ଯତୀନ ଦାଶ ପ୍ରଭୃତିଙ୍କ ଗହଣରେ ଶିଶୁସାହିତ୍ୟର ବିଭିନ୍ନ ଦିଗ ଉପରେ ଯେପରି ମୂଲ୍ୟବାନ୍ ଆଲୋଚନା ହୋଇଥିଲା ସେଥିରେ ନବାଗତ ଲେଖକ ଲେଖିକା ଓ ଶିଶୁପତ୍ରିକାର ସମ୍ପାଦକ-ମାନେ ବିଶେଷ ଉପକୃତ ହୋଇ ପାରିଥିଲେ । ନବାଗତ ଯେଉଁ ଶିଶୁସାହିତ୍ୟିକମାନଙ୍କ ମଧ୍ୟରେ ସିଦ୍ଧହସ୍ତତାର ସମ୍ଭାବନା ଲକ୍ଷ୍ୟ କରାଯାଉଛି ସେମାନେ ଏହି ଆସରରେ ଯୋଗ ଦେଇଥିଲେ । ହୁଏତ ସେମାନଙ୍କ ଭିତରେ ଥିବା ତ୍ରୁଟି ବିଚ୍ୟୁତି ଅନେକ ପରିମାଣରେ ସଂଶୋଧନ ହୋଇ

ପାରିଥାନ୍ତା । ଶିଶୁ ସାହିତ୍ୟ ପାଇଁ ଏବେ ନୂଆ କରି ଲେଖନୀ ଧରୁଥିବା ସାହିତ୍ୟିକ କନ୍ତଚରୁ ସେଠୀ, ଶର୍ମିଷ୍ଠା ମହାନ୍ତି, ଭରତୀ ବେହେରା, ବାଇଧର ନାୟକ, ମନ୍ମଥ କୁମାର ମହାପାତ୍ର, ଶରତ କୁମାର ନାୟକ, ଶର୍ଶିକାନ୍ତ ବେହେରା, ବାସୁଦେବ ବାରିକ, ବ୍ରଜମୋହନ ଦାସ, କୃତ୍ତିବାସ ନାୟକ, ନୃସିଂହନାଥ ସିଂହ, ସମରେନ୍ଦ୍ର ମହାପାତ୍ର, ପ୍ରଫୁଲ୍ଲକୁମାର ନାୟକ, ଅରୂପାନନ୍ଦ ପାଣିଗ୍ରାହୀ, ହରେକୃଷ୍ଣ ବେହେରା, କାର୍ତ୍ତିକ ଦାଶ, ସପନକୁମାର ମଲ୍ଲିକ, ମହେନ୍ଦ୍ରନାଥ ପରିଡ଼ା, ପ୍ରମୋଦ ରାୟ, ପ୍ରଶାନ୍ତ ମହାନ୍ତି, **ବାସନ୍ତୀ ମଂଜରୀ** ବାରିକ, ଶରତ୍ କୁମାର ବେହୁରା, ଶାନ୍ତି-ଲତା ମହାନ୍ତି, ମାନଗୋବିନ୍ଦ ବାରିକ, ପୂର୍ଣ୍ଣଚନ୍ଦ୍ର ଜେନା, ସୁରେଶ ପରିଡ଼ା, ନରହରି ବେହେରା, ପୂର୍ଣ୍ଣଚନ୍ଦ୍ର ସେଠୀ, ନିର୍ଭୟକୁମାର ପାଣି, ଗୌତମ ବାରିକ, ଦୁଃଖୀଶ୍ୟାମ ସେଠୀ ପ୍ରଭୃତିଙ୍କ ସୃଷ୍ଟିରେ ନୂତନ ସମ୍ଭାବନାର ସୂଚନା ମିଳିଥିଲେ ବି ଏମାନଙ୍କ ମଧ୍ୟରୁ ଅଧିକାଂଶ ଏପର୍ଯ୍ୟନ୍ତ ଠିକ୍ ବାଟରେ ଚାଲିଥିବା ପରି ମନେ ହୁଏନାହିଁ । ଅର୍ଥାତ୍ ଏମାନଙ୍କର ସୃଷ୍ଟିରେ କେଉଁଠି ପ୍ରଗତିଶୀଳତାର ଲକ୍ଷଣ ସୂଚିତ ହେଉଥିବା ବେଳେ କେଉଁଠି ରକ୍ଷଣଶୀଳତାର ଛାପ ସୁସ୍ପଷ୍ଟ ।

## ଶିଶୁସାହିତ୍ୟର ବିଷୟବସ୍ତୁ :

ବିଷୟ ବସ୍ତୁରୁ ଗୋଟାଏ ସାହିତ୍ୟ ପ୍ରଗତିଶୀଳ କି ନୁହେଁ ତାହା ଜାଣିହୁଏ । ଇନ୍ଦ୍ର ବର୍ଷିକରେ ନାହିଁ, ପାତାଳରେ ବାସୁକୀ ଭିଡ଼ିମୋଡ଼ି ହେଲେ ଭୂମିକମ୍ପ ହୁଏ-ନାହିଁ, ପ୍ରାର୍ଥନାରେ 'ଦିଅ ମୋତେ ଶୁଭବୁଦ୍ଧି, ଦିଅ ଦିବ୍ୟଜ୍ଞାନ, ଜ୍ଞାନଦାତା ଭଗବାନ' କହିଦେଲେ କାହାରି ଜ୍ଞାନ ଉଦୟ ହୁଏନାହିଁ । ସେହିପରି ଚୋରର କଳା ବଳଦଟିକୁ ଧଳା କରିଦେଇ ଈଶ୍ୱରଙ୍କ ନାମ ଧବଳେଶ୍ୱର ହେଲା, ବିଜୟ ନଗରମ୍ରୁ ସାକ୍ଷୀ ଦେବାକୁ ଆସି ଠାକୁରଙ୍କ ନାମ ସାକ୍ଷୀ-ଗୋପାଳ ହେଲା, ବେଲାଳସେନର କଟାମୁଣ୍ଡ କୁରୁକ୍ଷେତ୍ର ପଡ଼ିଆର ମେରୁଖୁଣ୍ଟ ଉପରେ ରହି ଅଠର ଦିନ ଯୁଦ୍ଧ ପର୍ଯ୍ୟବେକ୍ଷଣ କଲା ଇତ୍ୟାଦି କଥା ଶିଶୁସାହିତ୍ୟରେ ସ୍ଥାନ ପାଇବ କି ନାହିଁ ତାହା ବିଚାରର କଥା । ଯାହା ସତ୍ୟ, ବାସ୍ତବ ଓ ବିଜ୍ଞାନସମ୍ମତ ସେପରି ଗଳ୍ପ କବିତା ଶିଶୁ-ସାହିତ୍ୟର ପରିସର ଭିତରକୁ ଆସିବ ନା ଯାହା ଅସତ୍ୟ, ଅବାସ୍ତବ ଓ ଅବୈଜ୍ଞାନିକ ସେପରି ଗଳ୍ପ କବିତା ଶିଶୁକୁ ଶୁଣାଯାଇ ତା' ମନରେ ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ଦୃଢ଼ୀଭୂତ କରାଯିବ ?

ଅନେକେ କହିଥାନ୍ତି ଧର୍ମଧାରଣା ହିଁ ଶିଶୁକୁ ଶୃଙ୍ଖଳ, ସଂଯତ ତଥା ଭବିଷ୍ୟତରେ ସୁପୁରୁଷ କରି ଗଢି ତୋଳିବାରେ ସହାୟକ ହୋଇଥାଏ, ମାତ୍ର ଏହା ଏକା-ବେଳକେ ସତ୍ୟ ବୋଲି ମନେ ହୁଏ ନାହିଁ । ଶିଶୁର ପାରି-ପାର୍ଶ୍ୱିକ ପରିବେଶ, ସମାଜ ଓ ସଂସ୍କୃତି ଯଦି ଅସୁସ୍ଥ ଥାଏ ତେବେ କୌଣସି ଧର୍ମଧାରଣା ତା'ର ମାନସିକ ବିକାଶକୁ ସୁସ୍ଥ କରି ବିକଶିତ କରିପାରିବ ନାହିଁ । ଆଜିର ଅବସ୍ଥା ତାହା ହିଁ ହୋଇଛି । ଚଳଚ୍ଚିତ୍ର, ପତ୍ରପତ୍ରିକା ସର୍ବୋପରି ଶସ୍ତା ଅଶ୍ଲୀଳ ସଙ୍ଗୀତ, ନଗ୍ନ ବିଜ୍ଞାପନ ମାଧ୍ୟମରେ ଆଜି ଯେଉଁ କୁସଂସ୍କୃତିର ବୀଜବପନ ଚାଲିଛି ସେପରି ସ୍ଥଳେ ଶିଶୁସାହିତ୍ୟକୁ କିପରି ଆଦର୍ଶ ଓ ପବିତ୍ର କରି ଗଢିହେବ ତାହା ଏକ ଚିନ୍ତାର ବିଷୟ ହୋଇଛି ।

## ବେତାର ମାଧ୍ୟମରେ ଶିଶୁସାହିତ୍ୟ :

ଶିଶୁସାହିତ୍ୟ ପ୍ରଚାର ଦିଗରେ ବେତାର ଏକ ବଳିଷ୍ଠ ମାଧ୍ୟମ ହେଲେହେଁ ଏହା ତା'ର ଉଦ୍ଦେଶ୍ୟ ପୂରଣ ଦିଗରେ ସମର୍ଥ ହୋଇଛି ବୋଲି ମନେ ହୁଏନାହିଁ । ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମ, ଚକା ଚକା ଭଉଁରୀ, କିଶୋରଚକ୍ର, ଶିଶୁସଂସାର ପ୍ରଭୃତି କାର୍ଯ୍ୟକ୍ରମରେ ଶିଶୁ ଓ କିଶୋର ବୟସର ପିଲାଙ୍କ ପାଇଁ ଯେଉଁ ସାହିତ୍ୟ ସଂଗୀତ ପରିବେଷଣ କରାଯାଉଛି ତନ୍ମଧ୍ୟରୁ ଅଧିକାଂଶ ବାସ୍ତବ ଓ ଜୀବନଧର୍ମୀ ନୁହେଁ । ଏହି ବିଭାଗମାନଙ୍କରେ ଅଂଶଗ୍ରହଣ କରିବା ପାଇଁ ପ୍ରତିଷ୍ଠିତ ଓ ପ୍ରଗତିଶୀଳ ମନୋଭାବାପନ୍ନ ଶିଶୁସାହିତ୍ୟିକଙ୍କୁ ଉପେକ୍ଷା କରାଯାଇ ସେ ସ୍ଥାନରେ ଅବାସ୍ତବ ଓ ଧର୍ମ-ବିଷୟକ ଶସ୍ତା ଗଳ୍ପ କବିତାଗୁଡ଼ିକୁ ଅଗ୍ରାଧିକାର ଦିଆ-ଯାଉଛି । ଯଦିଓ ଅନ୍ଧବିଶ୍ୱାସ, ବିଜ୍ଞାନର ବ୍ୟବହାରିତା ଉପରେ କିଛି କୁହାଯାଉଛି ତାହା ପିଲାଙ୍କ ମନରେ ବୈଜ୍ଞାନିକ

ଦୃଷ୍ଟିକୋଣ କିପରି ସୃଷ୍ଟି କରାଯିବ ସେ ଦିଗରେ ଜାଣିଶୁଣି କିମ୍ବା ଅଜଣା ଭାବରେ ଆଦୌ ଧ୍ୟାନ ଦିଆ ଯାଉନାହିଁ, କିନ୍ତୁ ଖୋଲାଖୋଲି ଭାବରେ ଅନ୍ଧବିଶ୍ୱାସ, ଭାଗ୍ୟ ଓ ଭଗବାନ ସମ୍ବନ୍ଧୀୟ କାହାଣୀ, ନାଟକ ପରିବେଷଣ କରାଯାଉଛି । ବିଭାଗୀୟ କର୍ମକର୍ତ୍ତାମାନଙ୍କର ଏତାଦୃଶ ଦୁର୍ବଳତା ବା ପକ୍ଷପାତ ନୀତି ଶିଶୁ ସାହିତ୍ୟର ବିକାଶ ପଥରେ ଯେ ଏକ ଅନ୍ତରାୟ ସୃଷ୍ଟିକରୁଛି, ଏଥିରେ ବିସ୍ମିତ ହେବାର କ'ଣ ଅଛି ?

## 'ଜହ୍ନମାମୁଁ' ଏକ ଶିଶୁ ପତ୍ରିକା କି ?

ଶିଶୁ ପତ୍ରିକାର କୌଣସି ଧର୍ମରକ୍ଷା କରୁ ନଥିଲେବି 'ଜହ୍ନମାମୁଁ' ଏକ ଶିଶୁ ପତ୍ରିକାଭାବେ ଓଡ଼ିଶାରେ ବହୁଳ ପ୍ରସାର ଦିଗରେ ପ୍ରଥମ ସ୍ଥାନ ଅଧିକାର କରେ । ଏଥିରେ ପ୍ରକାଶିତ ଗଳ୍ପଗୁଡ଼ିକ ବାସ୍ତବ କିମ୍ବା ଜୀବନଧର୍ମୀ ନୁହେଁ । ଅଧିକାଂଶ ଗଳ୍ପ ଜାତକ, ଉପନିଷଦ, ବେତାଳ ପଞ୍ଚବିଂଶତି ଉପରେ ପର୍ଯ୍ୟବେଷିତ । ଏଥିରେ କବିତା ଆଦୌ ପ୍ରକାଶ ପାଏ ନାହିଁ । ପିଲାଙ୍କର ଜ୍ଞାନ ବିଜ୍ଞାନ ସମ୍ବନ୍ଧରେ ଏହା କିଛି କହେ ନାହିଁ । ବେଳେ ବେଳେ ନଗ୍ନ ଯୌନ ଛବିରେ ଏହା ଛବିଳ ହୋଇ ମନରେ ବିକାର ସୃଷ୍ଟି କରିଥାଏ । ଏଧରଣର ପତ୍ରିକା ଶିଶୁ ଅପେକ୍ଷା ଶିଶୁର ଅଭିଭାବକଠାରେ ଅଧିକ ଆଦୃତ ହେବାର ଲକ୍ଷ୍ୟ କରାଯାଏ । ପରିବାରର ବୟସ୍କ ବ୍ୟକ୍ତିମାନେ ଏହାକୁ ପାଠକରି ସାରିବାପରେ ଛବିଦେଖି ଆନନ୍ଦଲାଭ କରିବା ସକାଶେ ସର୍ବଶେଷରେ ଏହା ଶିଶୁ ପାଖକୁ ଯାଏ । ଏଥିରେ ସନ୍ନିବେସିତ ସମସ୍ତ ଅବୈଜ୍ଞାନିକ ଗଳ୍ପ ପିଲାକୁ ସାହସୀ କରି ଗଢି ତୋଳିବା ପରିବର୍ତ୍ତେ ଭୀରୁ, କାପୁରୁଷ କରି ଗଢିତୋଳି ଥାଏ ।

## 'ଶିଶୁଲେଖା'ର ଅବସ୍ଥା :

ଜହ୍ନମାମୁଁଠାରୁ ବହୁ ଗୁଣରେ ଉନ୍ନତ 'ଶିଶୁଲେଖା' ଓଡ଼ିଶା ସରକାରଙ୍କ ଶିଶୁସାହିତ୍ୟ ସମିତି ଆନୁକୂଲ୍ୟରେ ଦୀର୍ଘ ଛ'ବର୍ଷଧରି ପ୍ରକାଶ ପାଇ ଆସୁଥିଲେ ବି ଏହା ଏଯାଏ ନିୟମିତ ହୋଇପାରି ନାହିଁ । ଜହ୍ନମାମୁଁପରି ପତ୍ରିକା ଏ ରାଜ୍ୟରେ ପ୍ରାୟ କୋଡ଼ିଏ ହଜାର ସଂଖ୍ୟାରେ ବିକ୍ରି ହେଉଥିବା ବେଳେ 'ଶିଶୁଲେଖା' ନିୟମିତ ନହେବା ଦୁର୍ଭାଗ୍ୟର ବିଷୟ । ଆହୁରି ଦୁର୍ଭାଗ୍ୟର ବିଷୟ ଏହିଯେ, ଅନ୍ୟାନ୍ୟ ପତ୍ରପତ୍ରିକା ପରି ଏଥିରେ ସନ୍ନିବେସିତ ଅଧିକାଂଶ ଗଳ୍ପ ରାମାୟଣ, ମହାଭାରତର ତଥାକଥିତ ଆଖ୍ୟାୟିକାକୁ କେନ୍ଦ୍ରକରି ଲିଖିତ ଯାହା ଅବାସ୍ତବ ଓ ଅବୈଜ୍ଞାନ ଏବଂ ସମୟୋପଯୋଗୀ ନୁହେଁ ।

## ଅନ୍ଧକାରରେ ଆଲୋକ :

ଶିଶୁ ସାହିତ୍ୟରେ କ'ଣ ଅଛି, କ'ଣନାହିଁ, କେଉଁ ଶିଶୁ ସାହିତ୍ୟିକ ଭଲ ଲେଖିଲେ କି କିଏ ଖରାପ ଲେଖିଲେ ତାହା ଉପରେ ନା ଅଛି ଆଲୋଚନା ନା ସମାଲୋଚନା । ଶିଶୁ ସାହିତ୍ୟ ଗବେଷକ ଡଃ ମନୀନ୍ଦ୍ର ମହାନ୍ତିଙ୍କ ଗବେଷଣାରେ ସାପ ରହିଲା କି ବେଙ୍ଗ ରହିଲା ତାହା ଏପର୍ଯ୍ୟନ୍ତ ଜଣାଗଲା ନାହିଁ, କାରଣ ତାଙ୍କର ଥେସିସ୍ ଏପର୍ଯ୍ୟନ୍ତ ପ୍ରକାଶ ପାଇପାରି ନାହିଁ । କବି ବ୍ରଜନାଥ ରଥଙ୍କ ରଚିତ 'ଓଡ଼ିଆ ଶିଶୁ ସାହିତ୍ୟର ପରିକ୍ରମା' କୌଣସି ଏକ ବିଜ୍ଞାପନରେ ପ୍ରକାଶ ଅପେକ୍ଷାରେ ଅଛି ବୋଲି ଜଣାଯାଇଥିଲା, ତାହା ମଧ୍ୟ ଏଯାଏ ପ୍ରକାଶ ପାଇନାହିଁ । କେତେକ ପୁରୁଣା ଶିଶୁସାହିତ୍ୟିକ ନିଜକୁ ବେଶ୍ ପ୍ରତିଷ୍ଠିତ କରିପାରି ଥିଲେ ବି ସେମାନଙ୍କ ମଧ୍ୟରୁ କେହି-ଜଣେ ହେଲେ ଓଡ଼ିଆ ଶିଶୁ ସାହିତ୍ୟର ଗୋଟାଏ ଇତିହାସ ଲେଖିବାକୁ ଏଯାଏ ମନ ବଳାଇ ନାହାନ୍ତି । ଏହିସବୁ ଅଭାବ ଓ ଅବହେଳା ଦିଗକୁ ଅନୁଭବ କରି ଏବେ ଏ ରାଜ୍ୟରେ 'ଓଡ଼ିଆ ଶିଶୁ ସାହିତ୍ୟ ଏକାଡେମୀ' ନାମରେ ଏକ ନୂଆ ସାହିତ୍ୟ ଅନୁଷ୍ଠାନ ଗଢିଉଠିବା ଅତି ଆନନ୍ଦର ବିଷୟ । ଉଦ୍ୟୋକ୍ତାମାନଙ୍କର ନିଷ୍ଠା, ଧୈର୍ଯ୍ୟ, ଉଦ୍ୟମ ଓ ଆନ୍ତରିକତା ପଛକୁ ଶିଶୁ ସାହିତ୍ୟିକ ଓ ଶିଶୁ ସାହିତ୍ୟ ପ୍ରେମୀ ବନ୍ଧୁମାନଙ୍କର ସଦିଚ୍ଛା ଓ ସହଯୋଗ ରହିଲେ ଶିଶୁ ସାହିତ୍ୟ କ୍ଷେତ୍ରରେ ଦେଖା ଦେଇଥିବା ଅଭାବ, ଅବହେଳା ଓ ସଂକଟର ମୁକାବିଲା ଯେ ଅଚିରେ ହୋଇପାରିବ ଏଥିରେ ହତୋତ୍ସାହ ହେବାର କୌଣସି କାରଣ ନାହିଁ । ●

# ଶିଶୁମାନଙ୍କ ପ୍ରତି ଆମ କର୍ତ୍ତବ୍ୟ

ଶ୍ରୀ ବାବାଜୀଚରଣ ସ୍ୱାଇଁ

ଆଜି ଯେ ଶିଶୁ କାଲି ସେ ନାଗରିକ । ଦେଶର ଉନ୍ନତି ବା ସର୍ବବିଧ ମଙ୍ଗଳ ନିମନ୍ତେ ଏ ଦେଶରେ ସୁନାଗରିକମାନେ ବହୁଳ ଭାବେ ବାସ କରିବା ସର୍ବାଦୌ ଆବଶ୍ୟକ । ଏହି ସୁନାଗରିକର ସୃଷ୍ଟି ସମ୍ଭବ ଶିଶୁମାନଙ୍କର ଉପଯୁକ୍ତ ଯତ୍ନ ବା ତତ୍ତ୍ୱନେଇ ଶିଶୁକାଳରୁ ଗଢ଼ି ତୋଳିବା ।

କୁମ୍ଭାରର କଞ୍ଚା ହାଣ୍ଡି ସଦୃଶ ଏହି ଶିଶୁ । ହାଣ୍ଡି କଞ୍ଚାଥିବା ଅବସ୍ଥାରେ ତାକୁ ଯେପରି ଭାବେ ବଙ୍କା ବା ସିଧା କରିବାକୁ ଇଚ୍ଛା ହୁଏ କରଯାଇ ପାରେ । ମାତ୍ର ହାଣ୍ଡି ଶୁଖିଗଲେ ବା ହାଣ୍ଡିକୁ ପୋଡ଼ିଦେଲେ ତାହା ଟାଣ ହୋଇଯାଏ ଓ ତାହାର ଆକୃତିକୁ ବଦଳା ଯାଇ ପାରେ ନାହିଁ । ଠିକ୍ ଶିଶୁକୁ ଶିଶୁ ଅବସ୍ଥାରୁ ଯେପରି ଗଢ଼ିବ ସେ ବଡ଼ ହେଲେ ସେହିପରି ଗଢ଼ି ଉଠିବ । କିନ୍ତୁ ବଡ଼ବେଳେ ତାକୁ ହଠାତ୍ ଭଲ କରି ଗଢ଼ିବା ସମ୍ଭବ ନୁହେଁ । ଏହା ସଂପୂର୍ଣ୍ଣ ଅସମ୍ଭବ କହିଲେ ଅତ୍ୟୁକ୍ତି ହେବ ନାହିଁ । ବଡ଼ବେଳେ ଭଲ କରି ଗଢ଼ିବାକୁ ଚେଷ୍ଟା କଲେ ଏହା ଠିକ୍ ଛତୁ ଉଠା କାଠ ଓ ନିଶ ଉଠା ପାଠ ପରି ହୁଏ । ତେଣୁ ଉପଯୁକ୍ତ ଯତ୍ନ ନେଇ ଓ ଶିକ୍ଷା ଦେଇ ଶିଶୁକୁ ଭବିଷ୍ୟତର ସୁନାଗରିକ ରୂପେ ଗଢ଼ାଯାଇ ପାରେ ।

ଶିଶୁର ପ୍ରଥମ ଶିକ୍ଷାଳୟ ତାହାର ଗୃହ ଓ ତାହାର ଗୁରୁ, ପିତା ଓ ମାତା । ପିତାମାତାଙ୍କ ଉପଯୁକ୍ତ ତତ୍ତ୍ୱାବଧାନରେ ଓ ଶିକ୍ଷା ବଳରେ ସେ କିଛି ଭଲ ଗୁଣ ଶିକ୍ଷା କରେ ଓ ସ୍କୁଲକୁ ଆସିଲେ ସେ ତାହାର ଭଲଗୁଣ ବଳରେ ସାଙ୍ଗସାଥୀ ଓ ଗୁରୁମାନଙ୍କ ପ୍ରିୟପାତ୍ର ହୋଇ ପାରେ । ଶିକ୍ଷାଳୟରେ ଥିବା ସମୟତକ ଶିକ୍ଷକମାନଙ୍କ ସୁଶିକ୍ଷା ପାଇବା ଉଚିତ । ଶିଶୁମାନଙ୍କୁ ସୁଶିକ୍ଷା ଦେଇ ଉପଯୁକ୍ତ ରୂପେ ଗଢ଼ିବା ପାଇଁ ପିତାମାତା ଓ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ସମ୍ମିଳିତ ପ୍ରଚେଷ୍ଟା ହିଁ ଦାୟୀ ।

ଉପଯୁକ୍ତ ଶିକ୍ଷା ବା ଯତ୍ନ ନ ପାଇଲେ ଶିଶୁ କ୍ରମଶଃ ବିଶୃଙ୍ଖଳ ପଥ ଆଡ଼କୁ ଆଗେଇ ଯାଏ ଓ ଅତି ନିଷ୍ଠୁର ହୋଇ ସମାଜର ଦୁଷ୍ଟ ବ୍ରଣ ସଦୃଶ ସମାଜକୁ ଧ୍ୱଂସ ଆଡ଼କୁ ଟାଣି ନେବାକୁ ଲାଗେ । ଏଠାରେ ଗୋଟିଏ କ୍ଷୁଦ୍ର ଗଳ୍ପର ଉଦାହରଣ ଦିଆ ଯାଇପାରେ ।

କୌଣସି ଏକ ଚିତ୍ରକରଙ୍କୁ ତାଙ୍କ ଦେଶର ଜଣେ ଚିତ୍ରପ୍ରେମୀ ରଜା ଦୁଇଟି ଚିତ୍ର ଆଙ୍କିବାକୁ ଆଦେଶ ଦେଲେ । ଗୋଟିଏ ଚିତ୍ର ହେବ ଶାନ୍ତ ସରଳ ନିଷ୍ପାପ, ଲଜ୍ଜାବିହୀନ, ଭୟବିହୀନ ମଣିଷର ମୁଖ ଓ ଅନ୍ୟଟି ହେବ ଅତି ନିଷ୍ଠୁର, ଦୁର୍ଦ୍ଧର୍ଷ ଭୟଙ୍କର ମଣିଷର ମୁଖର ଛବି । ଚିତ୍ରକର ଛବି ଆଙ୍କି ଦେବାର ପ୍ରତିଶ୍ରୁତି ଦେଇ ରଜାଙ୍କ ନିକଟରୁ ଫେରିଲେ । ସେ ପ୍ରଥମେ ଶାନ୍ତ ସରଳ ମଣିଷର ଛବି ଆଙ୍କିବା ପାଇଁ ଚେଷ୍ଟା କଲେ ଓ ଏକ ଶିଶୁର ମୁଖ ମଣ୍ଡଳ ହିଁ ଉପଯୁକ୍ତ ବୋଲି ବିଚାରିଲେ । ତାପରେ ସେ ଏକ ଶିଶୁର କମନୀୟ ମୁଖ ମଣ୍ଡଳର ଛବି ଆଙ୍କିଲେ ।

ପ୍ରଥମ ଛବି ଆଙ୍କିବା ଶେଷ ହେଲା । ଦ୍ୱିତୀୟ ଛବି ଆଙ୍କିବା ପାଇଁ ସେ ଗୋଟିଏ ଦୁର୍ଦ୍ଧର୍ଷ, ନିଷ୍ଠୁର, ଭୟଙ୍କର ମଣିଷକୁ ଖୋଜିଲେ । ଦିନ ପରେ ଦିନ ଗଡ଼ି ଚାଲିଲା । ରଜାଙ୍କର ଘନଘନ ହୁକୁମ ଆସୁଥାଏ ଛବି ଦୁଇଟି ପାଇଁ ।

ଚିତ୍ରକର ସମୟ ମାଗି ଚାଲି ଯାଆନ୍ତି । ଲୋକ ଖୋଜୁଥାଆନ୍ତି । କିନ୍ତୁ ଉପଯୁକ୍ତ ପ୍ରଚଣ୍ଡ, ଭୟଙ୍କର, ରୁକ୍ଷ ମୁଖ-ମଣ୍ଡଳଧାରୀ କୌଣସି ମଣିଷର ମୁଖ ସେ ଦେଖିବାକୁ ପାଆନ୍ତି ନାହିଁ । ରାଜାଙ୍କ ବୟସ ତଥା ଚିତ୍ରକରର ବୟସ ମଧ୍ୟ ଏଥି ମଧ୍ୟରେ ବଢ଼ି ଯାଇଥାଏ । ଛବିଟି ନ ପାଇ ରାଜା ବ୍ୟସ୍ତ । ଛବି ଦେଇ ନ ପାରିବାରୁ ଚିତ୍ରକରର ମନ ମଧ୍ୟ ବ୍ୟସ୍ତ, ବିବ୍ରତ । ଚିତ୍ରକର ବୁଲୁବୁଲୁ ଦିନେ ଏହିଭଳି ବ୍ୟକ୍ତିର ସାକ୍ଷାତ ପାଇଲେ, ଯାହା ତାଙ୍କର ବହୁଦିନ ପରିଶ୍ରମର ଫଳ ପାଇବା ପାଇଁ ହିଁ ଉପଯୁକ୍ତ । ଜେଲ୍-ଖାନାର ଲୁହାଛଡ଼ ସେପଟରେ ଗୋଟାଏ ମଣିଷ ଠିଆ ହୋଇଛି । ମୁଖ ମଣ୍ଡଳରେ ନିଶ ଦାଢ଼ି । ଅତି ନିଷ୍ଠୁର ତଥା ଭୟଙ୍କର ତାହାର ମୁଖର ଆକୃତି । ଆଖି ଦୁଇଟା ରଢ଼ ନିଆଁ ଭଳି ଦପ୍ ଦପ୍ ହେଉଥାଏ । ଚିତ୍ରକରଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ଚିତ୍ରକର ସେହି କଏଦୀ ନିକଟକୁ ଗଲେ । ତାକୁ ସ୍ଥିର ହୋଇ ଠିଆ ହେବାକୁ ଅନୁରୋଧ କଲେ । ଚିତ୍ରଟିଏ ଆଙ୍କିବାର ଅଭିଳାଷ ଅଛି ବୋଲି ମଧ୍ୟ ଜଣାଇଲେ । ଚିତ୍ରକର ପୂର୍ବର ସେହି ଶାନ୍ତ ସରଳ ଶିଶୁର ଛବି ଥିବା କ୍ୟାନଭାସ ବାହାର କରି ତା ନିକଟରେ ଏହି ନିଷ୍ଠୁର ମୁଖଧାରୀ ମଣିଷର ଛବି ଆଙ୍କିବାକୁ ମନସ୍ଥ କଲେ ।

ସେହି ପୂର୍ବର ଛବି ଉପରେ କଏଦୀର ଆଖି ପଡ଼ିଲାରୁ ସେ କଇଁ କଇଁ ହୋଇ କାନ୍ଦି ଉଠିଲା । ଚିତ୍ରକର ତା କାନ୍ଦିବାର କାରଣ ପଚାରିବାରୁ କଏଦୀ କହିଲା ସେ ଛବିଟି ତା ପିଲା ଦିନର ଛବି । ତାକୁ ପାଞ୍ଚବର୍ଷ ବୟସ ହୋଇଥିବା ସମୟରେ ଏ ଛବିଟି ଜଣେ ଚିତ୍ରକର ଆଙ୍କିଥିଲେ ।

ଚିତ୍ରକର ବିସ୍ମିତ ହେଲେ । ସେ କଏଦୀ ବିଷୟରେ ତା ପିତାମାତା, ଜନ୍ମସ୍ଥାନ ଆଦି ପଚାରି ଠିକ୍ ଜାଣି ପାରିଲେ ଯେ, ସେ ଦିନର ଛବି ଯେଉଁ ଶିଶୁର, ପ୍ରକୃତରେ ସେ ଆଜି କଏଦୀ । ଗୋଟିଏ ମଣିଷର ଦୁଇଟି ଭିନ୍ନ ଛବି ।

ଚିତ୍ରକର ବିଶେଷ ଅନୁସନ୍ଧାନ କରି ଜାଣି ପାରିଲେ ଯେ ଉପଯୁକ୍ତ ଯତ୍ନ ନ ପାଇ ସେହି ଶିଶୁଟି ଆଜି ଅମଣିଷ ହୋଇ ଯାଇଛି ।

ପ୍ରକୃତରେ ଶିଶୁପ୍ରତି ଉପଯୁକ୍ତ ଦୃଷ୍ଟି ନ ଦେଲେ ବା ତାହାର ସୁରକ୍ଷଣାବେକ୍ଷଣ ବା ଯତ୍ନ ନ ନେଲେ ସେ ଭବିଷ୍ୟତରେ ସୁମଣିଷ ହୋଇ ଠିଆ ହୋଇ ପାରିବ ନାହିଁ । ସେଥିପାଇଁ ଆମର ପୂର୍ବତନ ପ୍ରଧାନ ମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହୁରୁ ଶିଶୁମାନଙ୍କୁ ଅତି ସ୍ନେହ କରୁଥିଲେ ଓ ଶିଶୁମାନଙ୍କ ମଧ୍ୟରେ ଦେଶର ଭବିଷ୍ୟତ ସ୍ୱପ୍ନ ଦେଖୁଥିଲେ ।

ଆମ୍ଭେମାନେ ଆଜି ଶିଶୁମାନଙ୍କ ମଙ୍ଗଳ ପାଇଁ ସମ୍ବିଧାନରେ ନିୟମ ପ୍ରଣୟନ କରିଛୁ । ୧୪ ବର୍ଷ ପର୍ଯ୍ୟନ୍ତ ବିନା ଖର୍ଚ୍ଚରେ ଶିକ୍ଷା ପ୍ରଦାନ । ବାଳ ଶ୍ରମିକଙ୍କୁ କର୍ମକ୍ଷେତ୍ରରୁ ଅପସାରଣ । ଶିଶୁମାନଙ୍କୁ ପୁଷ୍ଟିକର ଖାଦ୍ୟ ବଣ୍ଟନ ପାଇଁ ଉପଯୁକ୍ତ ବ୍ୟବସ୍ଥା । କିନ୍ତୁ କାର୍ଯ୍ୟତ ତାହା କିଛି କରି ପାରୁନୁ । ଆମ୍ଭେ ନିଜ ହାତରେ ନିଜେ ପିଲାମାନଙ୍କୁ ଖରାପ ବାଟକୁ ଟାଣି ନେଉଛୁ । ପିଲାମାନଙ୍କୁ ଚୋରୀ, ଅପମିଶ୍ରଣ ଆଦି ବିଷୟରେ ଶିକ୍ଷା ଦେଉଛୁ । ଏଠାରେ ମଧ୍ୟ ଗୋଟିଏ ଉଦାହରଣ ଦିଆଯାଇ ପାରେ । ଆମର ଅଙ୍କ ପାଠରେ ପିଲାମାନଙ୍କୁ ଶିକ୍ଷା ଦିଆ ଯାଉଛି, ଗୋଟିଏ ଗଉଡ଼ ଦୁଇ ଲିଟର କ୍ଷୀରରେ ଅଧଲିଟର ପାଣି ମିଶାଇ ଲିଟର ୩ ଟଙ୍କାରେ ବିକିଲେ ତାହାର କେତେ ଟଙ୍କା ଲାଭ ହୁଏ ଇତ୍ୟାଦି । ଫଳରେ ପିଲାର ମନ ସେଇଠି କ୍ଷତବିକ୍ଷତ ହୋଇଯାଏ । ସେ ଅପମିଶ୍ରଣ, ଚୋରୀ ଆଦି ବିଷୟରେ ସେଇଠି ଶିକ୍ଷା ପାଏ । ପୁଣି ସେହିପରି ମଦରେ ଜଳମିଶା କଥା ମଧ୍ୟ ରହୁଛି । ନିଶା ପ୍ରତି ଶିଶୁମନକୁ ଟାଣି ନିଆ ଯାଉଛି ।

କଳକାରଖାନାରେ ବାଳ ଶ୍ରମିକ ସଂଖ୍ୟା ଦିନକୁ ଦିନ ବଢ଼ି ଚାଲିଛି ଓ ଶିଶୁମାନଙ୍କୁ ପୁଷ୍ଟିକର ଖାଦ୍ୟ ନାମରେ ଆମେ ତାହାର ଖାଦ୍ୟକୁ ବଜାରରେ ବିକ୍ରି କରିବାରେ ବ୍ୟସ୍ତ ରହୁଛୁ । ଶିଶୁମାନଙ୍କୁ ନାନା ଅପକର୍ମରେ

ଲିପ୍ତ କରାଇ ଫାଇଦା ଉଠାଉଛନ୍ତି । ନିକଟରେ ଦିଲ୍ଲୀ ଡ଼ାକ-ଘରେ ଘଟିଥିବା ଲକ୍ଷାଧିକ ଟଙ୍କା ଚୋରୀ ସ୍କୁଲ ଛାତ୍ରମାନଙ୍କ ଦ୍ୱାରା ହିଁ ଘଟିଛି । ଏହାଠାରୁ ଦୁଃଖଦାୟକ ଘଟଣା କ'ଣ ଘଟିପାରେ ? ବାଳ ଅପରାଧୀଙ୍କ ସଂଖ୍ୟା ବହୁ ଗୁଣରେ ବଢ଼ି ଚାଲିଛି । ପିଲାଙ୍କୁ ଚୋରୀକରି ନେଇ ବିକଳାଙ୍ଗ କରି ଲୋକେ ବ୍ୟବସାୟ କରିବାରେ ଲାଗିଛନ୍ତି ।

ଏସବୁ ନିରାକରଣ କରି ପିଲାଙ୍କୁ ଭଲକରି ଗଢ଼ିବାକୁ କେବଳ ଆଇନ୍ ପ୍ରଣୟନ ହେଲେ ଚଳିବ ନାହିଁ । କାରଣ ଆମେ ଆଇନ୍ ଗଢ଼ୁଛେ ଓ ଦୋଷୀକୁ ଖସି ଯିବା ପାଇଁ ଆଇନ କାଢ଼ୁଛେ ବା ଆଇନ ଭାଙ୍ଗୁଛେ । ତେଣୁ ଯେପର୍ଯ୍ୟନ୍ତ ଆମମାନଙ୍କ ମନରେ ଦେଶ ପ୍ରୀତି, ଜାତି ପ୍ରୀତି ନ ଜାଗିଛି ସେ ପର୍ଯ୍ୟନ୍ତ ଆମେ କେବଳ ଦେଶକୁ ନୁହେଁ ନିଜକୁ ଠକି ଚାଲିଥିବା ଏବଂ ଭବିଷ୍ୟତର ବଂଶଧରମାନଙ୍କୁ ନର୍କ ଆଡ଼କୁ ବାଟ ଦେଖାଇ ଦେଉଥିବା ।

ଏହି ଅବସରରେ ପ୍ରତ୍ୟେକ ଅଭିଭାବକଙ୍କୁ ଅନୁରୋଧ ସେମାନେ ତୀକ୍ଷ୍ଣ ଦୃଷ୍ଟି ଦିଅନ୍ତୁ ଯେପରି ସେମାନଙ୍କର ପିଲାମାନେ ଅଶ୍ଳୀଳ ପୁସ୍ତକ, ଅଶ୍ଳୀଳ ଚିତ୍ର ଆଦି ଦେଖିବାର ସୁଯୋଗ ନ ପାଆନ୍ତି ଓ ଅପରପକ୍ଷରେ ଶିଶୁକୁ ଶିକ୍ଷା ଦେଲା ଭଳି ପୁସ୍ତକ, ପତ୍ରପତ୍ରିକା, ଚିତ୍ର ଆଦି ଯୋଗାଇ ଦେଇ ଅବସର ସମୟରେ ସେମାନଙ୍କ ମନକୁ ସେଥିରେ ମଜ୍ଜାଇ ରଖନ୍ତୁ ।

ସଂପାଦକ
ଜିଲ୍ଲା ଲେଖକ ପରିଷଦ
ଫୁଲବାଣୀ

# ଶିଶୁ ଓ ଶିଶୁସାହିତ୍ୟ

ଶ୍ରୀ ବାଉଧର ନାୟକ

ଶିଶୁସାହିତ୍ୟ ବିଷୟରେ କିଛି ଭାବିବା ପୂର୍ବରୁ ଶିଶୁମାନଙ୍କ ବିଷୟରେ ଆଗେ ଭାବିବା ଦରକାର । କାରଣ ଶିଶୁ ମନର କଥା ହିଁ ଶିଶୁସାହିତ୍ୟ ।

ଶିଶୁ ଶବ୍ଦଟି ଶୁଣିବାକୁ ଯେପରି ସରଳ ଓ ମଧୁର, ସେହିପରି ମଧ୍ୟ ଆବହମାନ କାଳରୁ ଶିଶୁଟିଏ ସମସ୍ତଙ୍କର ଅତି ଆଦରଣୀୟ ହୋଇ ରହିଛି । କର୍ମକ୍ଳାନ୍ତ ଜୀବନରୁ ମଣିଷ ଯେତେବେଳେ ଘରବାସକୁ ଫେରେ ନିଜର ଶିଶୁ ସନ୍ତାନଟିର କଅଁଳ, ସରଳ ମୁହଁକୁ ଦେଖି ସବୁ କିଛି ଭୁଲିଯାଏ । କେବଳ ଶିଶୁ ହିଁ ସ୍ୱର୍ଗୀୟ ଆଦରର ଅଧିକାରୀ । ସେହି ଶିଶୁ ପାଇଁ ଯେଉଁ ସାହିତ୍ୟ ରଚନା କରଯାଏ, ତାହା ହିଁ ଶିଶୁସାହିତ୍ୟ ।

ଶିଶୁର ଶାରୀରିକ ଗଠନ ପାଇଁ ଯେପରି ଉପଯୁକ୍ତ ସୁଷମ ଖାଦ୍ୟର ଆବଶ୍ୟକତା ରହିଛି, ସେହିପରି ମଧ୍ୟ ତାର ମାନସିକ ଶକ୍ତିର ବିକାଶ ପାଇଁ ଶିଶୁସାହିତ୍ୟର ଅଧିକ ପ୍ରୟୋଜନ ରହିଛି । ଆଜିର ଶିଶୁ କାଲିର ନାଗରିକ ହେବ । ଆଜିର ଶିଶୁ ଯେ କାଲି ଜଣେ ମହାତ୍ମା ନ ହେବ, ସେ କଥା କିଏ ଜାଣେ ? ଏ ଦେଶର ସୁରକ୍ଷା ଦାୟିତ୍ୱ ତାର ଜନ୍ମଗତ ଅଧିକାର । ତେଣୁ ଶିଶୁକୁ ସଯତ୍ନଭାବେ ସୁନାଗରିକ କରି ଗଢି ତୋଳିବା ପାଇଁ ଶିଶୁସାହିତ୍ୟର ସୃଷ୍ଟି । ଶିଶୁମାନଙ୍କର ପ୍ରତ୍ୟକ୍ଷ ଅନୁଭୂତିକୁ ସେମାନଙ୍କ ପାଖରେ ପହଞ୍ଚାଇଲେ ଶିଶୁର ଉପକାର ହେବ । ଶିଶୁସାହିତ୍ୟର ଉଦ୍ଦେଶ୍ୟ ଶିଶୁକୁ ମହତ ଓ ଚରିତ୍ରବାନ କରି ଗଢିବା । ଉତ୍ତମ ଗଛରେ ଉତ୍ତମ ଫଳ ଫଳିବା ପରି, ଶିଶୁସାହିତ୍ୟ ଶିଶୁକୁ ସୁନ୍ଦର ସ୍ୱଭାବ, ବୁଦ୍ଧିମତା କରିବାରେ ସାହାଯ୍ୟ କରେ । ରୁଚିପୂର୍ଣ୍ଣ ସରଳ ସାହିତ୍ୟକୁ ଶିଶୁ ତା ସରଳମନରେ ସ୍ଥାନ ଦିଏ । ତେଣୁ ଭିନ୍ନ ଭିନ୍ନ ସ୍ୱାଦର ଶିଶୁସାହିତ୍ୟର ଅଭିନବ ପରିକଳ୍ପନା କରଯାଇଅଛି । ଯଥା ଶିକ୍ଷଣୀୟ ଗଳ୍ପ, କବିତା, ମିନି ନାଟକ, ଢଗଢମାଳି ଓ ନାନାବାୟା ଗୀତ ପ୍ରଭୃତି । ଶିଶୁସାହିତ୍ୟ ମାଧ୍ୟମରେ ଶିଶୁମାନଙ୍କ ମନରେ ବିଚାର କରିବାର ଜ୍ଞାନୋଦୟ ହୁଏ । ବୁଦ୍ଧିର ପରିସର ବୃଦ୍ଧିପାଏ । ମନରେ ଧୈର୍ଯ୍ୟ ଆସେ । ବାହୁରେ ଶକ୍ତି ଆସେ । ଯାହା କରିବାକୁ ଯାଏ ଉତ୍ତମ ରୂପେ ବିଚାର କରି କରେ । ଶିଶୁମାନଙ୍କ ପାଇଁ ଶିଶୁସାହିତ୍ୟର ଉଲ୍ଲେଖନୀୟ ଅବଦାନ ରହିଛି ।

ଶିଶୁସାହିତ୍ୟ ସରଳ ତଥା ସାବଲୀଳ ହେବା ଏକାନ୍ତ ପ୍ରୟୋଜନ । କାରଣ ଶିଶୁର ମନ ସରଳ ନିର୍ମଳ ସ୍ୱଚ୍ଛ କାଚ ପରି । କ୍ଲିଷ୍ଟ ସାହିତ୍ୟରେ ତାର ମନୋନିବେଶ ହେବ ନାହିଁ । ତେଣୁ ଶିଶୁର ମନଛୁଆଁ ସାହିତ୍ୟ ହିଁ ପ୍ରକୃତରେ ଶିଶୁସାହିତ୍ୟ । ଏତଦ୍ ଭିନ୍ନ ଶିଶୁସାହିତ୍ୟ ବାସ୍ତବଧର୍ମୀ ଓ ମୌଳିକ ଚିନ୍ତାଧାର ଉପରେ ପର୍ଯ୍ୟବସିତ ହେବା ଦରକାର । ସମାଜର ଚିତ୍ରକୁ ସରଳ ଭାବେ ଶିଶୁର ମନଛୁଆଁ କରିବା ଦରକାର ।

ବ୍ୟାସକବି ଫକୀରମୋହନଙ୍କ ଲେଖନୀରୁ ଶିଶୁସାହିତ୍ୟର ସୃଷ୍ଟି ହୋଇଥିଲେ ମଧ୍ୟ, ଏହା ଅନେକ ପଛରେ ପଡ଼ି ରହିଥିଲା । ସମୟ ସ୍ରୋତରେ ସମସ୍ତେ ଆଗେଇ ଆଗେଇ ଯାଉଥିବା ସ୍ଥଳେ ଶିଶୁସାହିତ୍ୟ ପଛେଇ ପଛେଇ ରହୁଥିଲା । କିନ୍ତୁ ଦୂରଦର୍ଶୀ କେତେଜଣ ଉଦାର ଶିଶୁସାହିତ୍ୟପ୍ରେମୀଙ୍କ ମହତ ଉଦ୍ଦେଶ୍ୟରେ "ଶିଶୁସାହିତ୍ୟ ଏକାଡେମୀ"ର ଶୁଭାରମ୍ଭ କରଯାଇଛି । ଏ ସାଧୁ ଉଦ୍ୟମ ନିଶ୍ଚୟ ଶିଶୁସାହିତ୍ୟକୁ ଦୀପ୍ତିମନ୍ତ କରି ଗଢିତୋଳିବ । ଏ ମହତ ଉଦ୍ଦେଶ୍ୟ ପଛରେ ଜଗନ୍ନାଥଙ୍କର ଅପାରକରୁଣା ରହିଛି ।

ଶିଶୁସାହିତ୍ୟ ସୁଦୂରପ୍ରସାରୀ ହେଉ, ଚକାଡୋଳା ନୀଳାଦ୍ରିବିହାରୀଙ୍କ ଠାରେ ଏତିକି ପ୍ରାର୍ଥନା ।

—ଜୟ ଶିଶୁସାହିତ୍ୟ—

# ଶିଶୁସାହିତ୍ୟର ଆଭିମୁଖ୍ୟ

ଶ୍ରୀ ଜୟକୃଷ୍ଣ ସାହୁ

## ଶିଶୁସାହିତ୍ୟ କଅଣ ?

ଶିଶୁମାନଙ୍କ ଦ୍ୱାରା ରଚିତ ସାହିତ୍ୟକୁ କେହି କେହି 'ଶିଶୁ-ସାହିତ୍ୟ' କହନ୍ତି ; ମାତ୍ର ଶିଶୁମାନଙ୍କ ଦ୍ୱାରା ସାହିତ୍ୟ ରଚନା ପ୍ରାୟ ସମ୍ଭବ ନୁହେଁ । ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ସାହିତ୍ୟ ସାଧାରଣତଃ ଶିଶୁସାହିତ୍ୟ ଅଟେ । ଅବଶ୍ୟ ଶିଶୁ-କିଶୋର-ବୟସ ନିର୍ବିଶେଷରେ ସମସ୍ତେ ଏହାର ରଚୟିତା ହୋଇପାରନ୍ତି । ଶିଶୁର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଯେଉଁ ସାହିତ୍ୟ ସର୍ବତୋଭାବେ ଶିଶୁପାଠ୍ୟ ହୋଇଥାଏ, ତାହା ଯଥାର୍ଥରେ ଶିଶୁସାହିତ୍ୟ ପଦବାଚ୍ୟ । ପାଠ୍ୟପୁସ୍ତକ ଏବଂ ସାଧାରଣ ଭାବରେ ଶିଶୁ ପଠନୀୟ ପୁସ୍ତକ ଓ ପତ୍ରପତ୍ରିକା ଶିଶୁସାହିତ୍ୟ ଭାବରେ ବିବେଚିତ ହୋଇଥାଏ । ଶିଶୁଶିକ୍ଷା ନିମନ୍ତେ ଉଭୟବିଧ ଶିଶୁସାହିତ୍ୟର ଆଭିମୁଖ୍ୟ ସୁଦୂର-ପ୍ରସାରୀ । ପାଠ୍ୟପୁସ୍ତକ ଶିଶୁର ବାଧ୍ୟତାମୂଳକ ଭାବରେ ପଠନୀୟ ହୋଇଥିବା ବେଳେ ସାଧାରଣ ପଠନୀୟ ପୁସ୍ତକ ଓ ପତ୍ରପତ୍ରିକା ଗୁଡ଼ିକୁ ଶିଶୁ ସ୍ୱାଧୀନ ଭାବରେ ପଢ଼ି-ଥାଏ । ପ୍ରଥମଟି ପାଇଁ ଶିକ୍ଷକଙ୍କ ସହାୟତା ଏକାନ୍ତ ଅପରିହାର୍ଯ୍ୟ, ମାତ୍ର ଦ୍ୱିତୀୟଟି ନିମନ୍ତେ ତାହାର ବିଶେଷ ପ୍ରୟୋଜନୀୟତା ପ୍ରାୟ ନ ଥାଏ । ଶିଶୁସାହିତ୍ୟ ଭାବରେ ଉଭୟର ଗୁରୁତ୍ୱପୂର୍ଣ୍ଣ ଭୂମିକା ସ୍ୱୀକାର୍ଯ୍ୟ ।

## ଶିଶୁସାହିତ୍ୟର ଆଭିମୁଖ୍ୟ :

ସହିତରେ ରହି ସମ୍ୟକ ହିତସାଧନ କରିବା ସାଧାରଣ ସାହିତ୍ୟର ଆଭିମୁଖ୍ୟ । ଶିଶୁସାହିତ୍ୟର ଆଭିମୁଖ୍ୟ ମଧ୍ୟ ତାହାର ଅନୁରୂପ । ସାହିତ୍ୟ ମହାଦ୍ରୁମର ମୂଳଭାଗ ହୋଇଥିବାରୁ ଶିଶୁସାହିତ୍ୟର ଆଭିମୁଖ୍ୟ ସାହିତ୍ୟ-ଆଭି-ମୁଖ୍ୟର ଅନୁରୂପ ହେବା ସ୍ୱାଭାବିକ୍ । ସାଧାରଣତଃ ମନୁଷ୍ୟର ଶିକ୍ଷାକାଳ 'ଗର୍ଭାଧାନ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ' ବିସ୍ତୃତ । ତେଣୁ ସାହିତ୍ୟ ଶିକ୍ଷା ଗର୍ଭାଧାନ ଠାରୁ ଆରମ୍ଭ, ଏହା କହିଲେ ଅତିରଞ୍ଜିତ ହେବନାହିଁ । ମହାମୁନି ଶୁକଦେବ ମାତୃଗର୍ଭରେ ଥାଇ ପିତା ମହର୍ଷି ବ୍ୟାସଦେବଙ୍କଠାରୁ ଯଥାର୍ଥ ଶିକ୍ଷାପ୍ରାପ୍ତ ହୋଇ ତତ୍ତ୍ୱଜ୍ଞାନୀ ଭାବରେ ଜନ୍ମଗ୍ରହଣ କରିଥିଲେ ଏବଂ ସେ ଭୂମିଷ୍ଠ ହେବାମାତ୍ରେ ତାହାଙ୍କ ତତ୍ତ୍ୱ-ଜ୍ଞାନକୁ ମାନ୍ୟତା ଦେଇ ପିତା ବ୍ୟାସଦେବ ପ୍ରଣାମ କରି-ଥିଲେ । ଗର୍ଭବାସରେ ଥାଇ ଅଭିମନ୍ୟୁ ତାଙ୍କ ପିତା ଅର୍ଜୁନଙ୍କ ଠାରୁ ସମରଶିକ୍ଷା ପର୍ଯ୍ୟାୟର ଜଟିଳ ଚକ୍ରବ୍ୟୂହ ଭେଦ ଶିକ୍ଷା କରିଥିଲେ । ତେଣୁ ଶିଶୁସାହିତ୍ୟର ଆଭି-ମୁଖ୍ୟ ଗର୍ଭାଧାନ ଠାରୁ ଆରମ୍ଭ ହୋଇଥାଏ, ଏଥିରେ ସନ୍ଦେହ ନାହିଁ ।

## ଶୈଶବରେ ଶିଶୁସାହିତ୍ୟର ଆଭିମୁଖ୍ୟ :

ଶୈଶବକାଳରେ ଶିଶୁଶିକ୍ଷା ପରିପ୍ରେକ୍ଷୀରେ ଶିଶୁ-ସାହିତ୍ୟର ଭୂମିକା ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ । ଭାଷା ଶିକ୍ଷାରୁ ଏହାର ଅୟମାରମ୍ଭ ହୋଇଥାଏ । ମାତାଙ୍କ ଦ୍ୱାରା ଏହି ଶିକ୍ଷା ସଂପନ୍ନ ହେଉଥିବାରୁ ଏହାର ନାମ 'ମାତୃଭାଷା' । ଏହି ମାତୃଭାଷା ସମସ୍ତ ଉଚ୍ଚ ଶିକ୍ଷାର ମାଧ୍ୟମ ।

ମାତା କେବଳ ଭାଷା ଶିକ୍ଷାଦାନରେ ସୀମାବଦ୍ଧ ନ ରହି, ତା ସହିତ ଶିଶୁର ଶାରୀରିକ, ମାନସିକ ଓ ନୈତିକ ବିକାଶ ପାଇଁ ଶିକ୍ଷା ଦେଇଥାନ୍ତି । ଶିଶୁକୁ ଖୁଆଇବା, ଶୁଆଇବା, ଖେଳାଇବା ଓ ଅଝଟପଣକୁ ହଟାଇବା ଆଦି ସକଳ କ୍ଷେତ୍ରରେ ମାତାଙ୍କର ଏତାଦୃଶ ଶିକ୍ଷା ପ୍ରଦତ୍ତ ହୋଇଥାଏ । ଏପରି ଶିକ୍ଷାଦାନ ସର୍ବତୋଭାବେ ଆୟାସ-ବିହୀନ, ସ୍ୱଚ୍ଛନ୍ଦ ଓ ସାବଲୀଳ ହୁଏ । ଗୀତ ଓ ଗପ ମାଧ୍ୟମରେ ଏହି ଶିକ୍ଷା ଦିଆଯାଇଥାଏ । ଏଗୁଡ଼ିକ ବିପୁଳ ଭାବରେ ଶ୍ରୁତିମଧୁର ଓ ଯାଦୁକରୀଶକ୍ତିସଂପନ୍ନ । କେତେକ

ଗୀତ ଓ ଗପ ଅର୍ଥହୀନ ହେଲେ ମଧ୍ୟ ମଧୁରତା ଓ ସୁଶ୍ରାବ୍ୟତା ଦୃଷ୍ଟିରୁ ଅତ୍ୟନ୍ତ ଉପାଦେୟ । ନିମ୍ନୋକ୍ତ କବିତା ଓ ଗୀତି କାହାଣୀରୁ ଏହାର ସୁସ୍ପଷ୍ଟ ଦୃଷ୍ଟାନ୍ତ ମିଳେ ।

କବିତା–

"ଇଟିକିଲି ମିଟିକିଲି ଫୁଟିଗଲା କାଇଞ,
ତୁମର ଆମର ନାଲି ପଇଞ,
ନାଇ ପେଏଁ ପେଏଁ ବାଜଇ ହୀର,
ଗୋଟିକ ଉପରେ ଗୋଟିଏ ଚିର ।......"

ଗୀତି-କାହାଣୀ–

"......କି ରଜା, ଖଣ୍ଡ ଖଜା,
କି ଖଣ୍ଡ, ମିରିଗ ଇଣ୍ଡ ;
କି ମିରିଗ, ଝାଡ଼ ମିରିଗ ;
କି ଝାଡ଼, କଣ୍ଟା ବାଡ଼ ;
କି କଣ୍ଟା, କାନକୋଳି କଣ୍ଟା ;......"

ଏହି ଅର୍ଥହୀନ, ଶ୍ରୁତି ମଧୁର କବିତା ଓ ଗୀତି-କାହାଣୀର ଭୂମିକା ଶିଶୁ ସାହିତ୍ୟକ୍ଷେତ୍ରରେ ସୁପ୍ରତିଷ୍ଠିତ ଓ ଅପରିହାର୍ଯ୍ୟ । ଆମ ଲୋକଗୀତ ଗୁଡ଼ିକ ସାହିତ୍ୟ କ୍ଷେତ୍ରରେ 'ଲୋକ-ବେଦ' ଭାବରେ ସ୍ୱୀକୃତି ହୋଇ ଭଳି ଶିଶୁ କବିତା ଗୁଡ଼ିକ 'ଶିଶୁ ବେଦ' ରୂପେ ମାନ୍ୟତା ପାଇବା ଅପ୍ରାସଙ୍ଗିକ ହେବ ନାହିଁ ।

## ଅବାସ୍ତବ କାହାଣୀରେ ଶିଶୁ ସାହିତ୍ୟର ଆଭିମୁଖ୍ୟ :–

ଅର୍ଥହୀନ ଶିଶୁ କବିତା ଓ ଗୀତି କାହାଣୀ ପରି ଅବାସ୍ତବ କାଳ୍ପନିକ କାହାଣୀର ସ୍ଥାନ ଶିଶୁ ସାହିତ୍ୟ କ୍ଷେତ୍ରରେ ଅପରିହାର୍ଯ୍ୟ । ଏହାର ଆବଶ୍ୟକତା ବହୁମୁଖୀ । ଏ ଗୁଡ଼ିକ ଅବାସ୍ତବ ହେଲେ ହେଁ, ଶିଶୁର ସର୍ବାଙ୍ଗୀନ ଶିକ୍ଷା ନିମନ୍ତେ ପର୍ଯ୍ୟାପ୍ତ ଉପାଦାନ ଯୋଗାଇଥାଏ ।

ଏହି କାହାଣୀଗୁଡ଼ିକ ପଶୁ, ପକ୍ଷୀ, ଜଳଜୀବ, ମଣିଷ, ରଜା, ଭୂତ, ପରୀ, ଦେବତା, ବ୍ରହ୍ମରାକ୍ଷସ, ଜଳ-ମୀନା ଆଦିକୁ ଉପଜୀବ୍ୟ କରି ରଚିତ ହୋଇଥାଏ । ଅନେକ କାହାଣୀର ରଚୟିତା ଅଜ୍ଞାତ । ସେ ଗୁଡ଼ିକ ପରମ୍ପରା କ୍ରମେ ସମାଜରେ ପ୍ରଚଳିତ ହୋଇ ଆସୁଛି । ଆଉ କେତେ କାହାଣୀ ଶିଶୁ ଶିକ୍ଷା ନିମନ୍ତେ ମହାନ ପଣ୍ଡିତମାନଙ୍କ ଦ୍ୱାରା ରଚିତ । ଏହି କାହାଣୀ ଗୁଡ଼ିକରେ ପଶୁପକ୍ଷୀ କଥା କହନ୍ତି, ପକ୍ଷୀରାଜ ଘୋଡ଼ା ରଜା ପୁଅକୁ ପିଠିରେ ବସାଇ ସାତ ସମୁଦ୍ର ତେର ନଈ ଉପରେ ଶୂନ୍ୟରେ ଉଡ଼ିଯାଏ । ମୂଷା, କାକ ଓ କଇଞ୍ଚ ମିତ ବସନ୍ତି ; ବ୍ରହ୍ମ ରାକ୍ଷସ ତା' ପ୍ରଶ୍ନର ଉତ୍ତର ପାଇଲେ ଶାନ୍ତ ହୋଇ-ଯାଏ । ଅବାସ୍ତବ ଓ ଉଦ୍ଭଟ ବୋଧ ହେଉଥିଲେ ମଧ୍ୟ ଏ ଗୁଡ଼ିକର ଶିକ୍ଷାଗତ-ମୂଲ୍ୟ ଅପରିସୀମ । ଶିଶୁ ଶିକ୍ଷା ପର୍ଯ୍ୟାୟରେ ଏ ଗୁଡ଼ିକର ସ୍ଥାନ ପ୍ରତିଷ୍ଠିତ । ଏ ଗୁଡ଼ିକ ମନୋବିଜ୍ଞାନସମ୍ମତ ମଧ୍ୟ ।

କ୍ରମ ବିବର୍ତ୍ତନ ପର୍ଯ୍ୟାୟରେ ଆଜିର ମାନବ ଶିକାରୀ, କୃଷକ ଜୀବନ ଅତିବାହିତ କଲା ପରେ ଆଧୁନିକ ସଭ୍ୟ-ମାନବ ସ୍ତରକୁ ଆସି ବିଜ୍ଞାନ–ଅବଦର ସୁଖ ସୁଯୋଗର ଅଧିକାରୀ ହୋଇଛି । ଏହି ଅତୀତ ଜୀବନ ଯାପନ ପର୍ଯ୍ୟାୟ ଏବେ ସଂକ୍ଷିପ୍ତ ଭାବରେ ତାହାର ଜୀବନରେ ଉଦ୍‌ଯାପିତ ହେଉଛି । ଶୈଶବର ପ୍ରଥମ ଭାଗରେ ଶିଶୁ ଜୀବନରେ ଶିକାରୀ ଜୀବନ ଅତିବାହିତ ହୁଏ । ଶିଶୁଠାରୁ କୌଣସି ଜିନିଷ ନେବାକୁ ଉଦ୍ୟମ କଲେ ସେ ହିଂସ୍ର ହୋଇ ଉଠେ ଓ ପ୍ରତିରୋଧ କରିବା ପାଇଁ କାମୁଡ଼ି ପକାଇବାକୁ ପଶ୍ଚାଦ୍‌ପଦ ହୁଏ ନାହିଁ । ତାହାର ଏହି ପ୍ରତିକ୍ରିୟାରେ ଶିକାରୀ ଜୀବନର ସ୍ପଷ୍ଟ ପରିପ୍ରକାଶ ଘଟିଥାଏ । ଆଦିମ ମନୁଷ୍ୟ ପ୍ରକୃତିର ବୈଚିତ୍ର୍ୟଦର୍ଶନରେ ଆଚମ୍ବିତ ଓ କୌତୁହଳୀ ହୁଏ ଏବଂ ତା' ମନରେ ନାନା ପ୍ରଶ୍ନ ଉଠୁଥାଏ । ଶିଶୁର ତିନିବର୍ଷ ବୟଃକ୍ରମ କାଳରେ ଏହି ଅବସ୍ଥା ଗୋଚର ହୋଇଥାଏ । ତେଣୁ ଶିଶୁ କୌତୁହଳୀ ହୋଇ ନାନା ପ୍ରଶ୍ନ ପଚାରେ । ଶିଶୁର ଏହି ଅବସ୍ଥାକୁ 'ପ୍ରଶ୍ନ କାରିଣୀ ଅବସ୍ଥା' କୁହା ଯାଇଥାଏ । ଏହି ଅବସ୍ଥାରେ ସରଳ ଓ ଚିତ୍ତାକର୍ଷକ ପଦ୍ଧତିରେ ଗପ, ଗୀତ, କଥୋପ-କଥନ, ଅଭିନୟ ମାଧ୍ୟମରେ ଉକ୍ତଶିଶୁ ପ୍ରଶ୍ନ ଗୁଡ଼ିକର ସମାଧାନ ଶିଶୁସାହିତ୍ୟର ଆଭିମୁଖ୍ୟ ହେବା ଉଚିତ । ଆମ ଶିଶୁ-ସାହିତ୍ୟରେ ଏହି ଦୃଷ୍ଟି କୋଣରୁ ବିଷୟ

ସମାବେଶ ଦେଖିବାକୁ ମିଳେ । ଆଧୁନିକ ବିଜ୍ଞାନ ଯୁଗରେ ଏହାର ଯୁଗୋପଯୋଗୀ ପ୍ରସାରଣ ଭକ୍ତ ଆଭିମୁଖ୍ୟର ଅନ୍ତର୍ଭୁକ୍ତ ହେଉଅଛି ।

ଶିଶୁର ନଅବର୍ଷ ବୟଃକ୍ରମ ଆଡ଼କୁ କୃଷି ସଭ୍ୟତା ସ୍ଥାନ ଗ୍ରହଣ କରେ । ଏହି ପରିପ୍ରେକ୍ଷୀରେ ଶିଶୁ ଅବାସ୍ତବ, ଉଦ୍ଭଟ କଳ୍ପନାରୁ କ୍ରମଶଃ ଅପସରି ଆସି ଯୋଜନାବଦ୍ଧ ଭାବରେ କାର୍ଯ୍ୟ କରେ ଓ ତା'ଠାରେ ଯୁକ୍ତି, ବିଚାର ଆଦିର ସଂକେତ ସ୍ପଷ୍ଟ ଭାବରେ ଦେଖାଦିଏ । ଏହି ଅବସ୍ଥାରେ ଶିଶୁ ସାହିତ୍ୟ କ୍ରମୋତ୍କର୍ଷ ଲାଭ କରି ଯୋଜନା-ଯୁକ୍ତି-ବିଚାର ଆଧାରିତ ହେବା ପ୍ରୟୋଜନୀୟ ଏବଂ ତାହା ହେଉଛି ମଧ୍ୟ ।

ଏହି ଅବସ୍ଥାର ଉତ୍ତରଣ ପରେ ଆଧୁନିକ ବୈଜ୍ଞାନିକ ସଭ୍ୟତା ଶିଶୁର ବୟଃକ୍ରମରେ ଆସ୍ଥାନ ଜମାଏ । ତେଣୁ ଏହି ଅବସ୍ଥାରେ ଶିଶୁସାହିତ୍ୟର ଆଭିମୁଖ୍ୟ ବିଜ୍ଞାନଭିତ୍ତିକ ହେବା ଯୁକ୍ତିଯୁକ୍ତ । ଆଜିର ବୈଜ୍ଞାନିକ ଓ ବୈଷୟିକ ଶିକ୍ଷା ବ୍ୟବସ୍ଥା ଶିଶୁସାହିତ୍ୟରମୁଖ୍ୟଆଭିମୁଖ୍ୟ ହେବାକୁ ଲାଗିଣି ।

ଶିଶୁର ଯେଉଁ ବୟକ୍ରମରେ ଯେପରି ଶିକ୍ଷା ପ୍ରୟୋଜନ, ସେପରି ଶିକ୍ଷାର ବ୍ୟବସ୍ଥା ନ ହେଲେ, କିମ୍ବା ଶିକ୍ଷାରେ ବ୍ୟତିକ୍ରମ ଘଟିଲେ ଶିଶୁର ସର୍ବାଙ୍ଗୀନ ବିକାଶ ସାଧିତ ହୋଇ ପାରେ ନାହିଁ । ଏହାର ଉଦାହରଣ ଶିଶୁ ଶିକ୍ଷା-କ୍ଷେତ୍ରରେ ଆଦୌ ଦୁର୍ଲଭ ନୁହେଁ । ପ୍ରାଚୀନ କାଳରେ ମଧ୍ୟ ଏହାର ଦୃଷ୍ଟାନ୍ତ ପରିଦୃଷ୍ଟ ହୋଇଛି । ଅତୀତରେ ରାଜା ସୁଦର୍ଶନ ତାଙ୍କର ପାରବତପ୍ରିୟ ଦୁଷ୍ଟ ପୁତ୍ରମାନଙ୍କୁ ବହୁ ଆଚାର୍ଯ୍ୟ-ନିୟୋଗ ସତ୍ତ୍ୱେ ଶିକ୍ଷିତ କରାଇବାକୁ ସମର୍ଥ ହୋଇ ପାରିଲେ ନାହିଁ । ବୟସ ଅନୁଯାୟୀ ମନସ୍ତାତ୍ତ୍ୱିକ ପଦ୍ଧତି ଅନୁସରଣ କରଯାଇ ନ ଥିବାରୁ ରାଜପୁତ୍ରମାନଙ୍କ ଶିକ୍ଷା ସଫଳ ହୋଇନଥିଲା । ମାତ୍ର ଆଚାର୍ଯ୍ୟ ବିଷ୍ଣୁଶର୍ମାଙ୍କ ପ୍ରଦତ୍ତ ପାଠ୍ୟ ବିଷୟର ଆଭିମୁଖ୍ୟ ମନସ୍ତାତ୍ତ୍ୱିକ ଓ ବୟଃକ୍ରମ ଅନୁରୂପ ହେବାରୁ ସଫଳ ହୋଇ ପାରିଥିଲା । ସେ ଶିଶୁ-ମାନଙ୍କୁ ସେମାନଙ୍କ ପାରବତ-ପ୍ରେମ ମାଧ୍ୟମରେ ଶିକ୍ଷା ଦେଇଥିଲେ । ପାରାମାନଙ୍କର ନାମକରଣ କରିବାକୁ ଯାଇ ଅକ୍ଷର ଶିକ୍ଷା ଏବଂ ପାରାଗଡ଼ି ନିର୍ମାଣରୁ ଦୁର୍ଗ ରଚନା, ପଶୁପକ୍ଷୀ-ଉପଜୀବ୍ୟ ଗଳ୍ପ ମାଧ୍ୟମରେ ସାମାଜିକତା, ରାଜନୀତି ଆଦି ରାଜମାନଙ୍କୁଉଚିତ ଶିକ୍ଷା ଦେଇ ପାରିଥିଲେ । ରାଜକୁମାରମାନଙ୍କ ପାଇଁ ତାଙ୍କ ଦ୍ୱାରା ରଚିତ ଶିଶୁସାହିତ୍ୟ 'ପଞ୍ଚତନ୍ତ୍ର' ନାମରେ ଜନ୍ମନେଲା । ଏହି ସାହିତ୍ୟ ଏକାନ୍ତ ଉପାଦେୟ ଓ ସର୍ବଯୁଗ-ଉପଯୋଗୀ । ତେଣୁ ଚିରନ୍ତନ ଶିଶୁସାହିତ୍ୟ ଭାବରେ ସୁପ୍ରତିଷ୍ଠିତ ଏବଂ ସାରା ବିଶ୍ୱରେ ଆଦୃତ । 'କଥା ସରିତ୍-ସାଗର' ଆଦି ଏହି ଶ୍ରେଣୀୟ ସାହିତ୍ୟ । ଜାତକ କାହାଣୀ ଏକାନ୍ତଭାବରେ ଆଧ୍ୟାତ୍ମିକ ଭାବ ଆଧାରିତ ହେଲେହେଁ ସରସ ଓ ଉତ୍କୃଷ୍ଟ ଶିଶୁ-ସାହିତ୍ୟ ଅଟେ ।

ଆମ ଶିଶୁସାହିତ୍ୟ ପରି ଅନ୍ୟ ଦେଶମାନଙ୍କରେ ଚିରନ୍ତନ ଶିଶୁସାହିତ୍ୟ ମଧ୍ୟ ଅଛି । ଆମ 'ପଞ୍ଚତନ୍ତ୍ର' ପରି ସେଗୁଡ଼ିକ ମଧ୍ୟ ପଶୁପକ୍ଷୀ, ପରୀ ଆଦିଙ୍କୁ ଉପଜୀବ୍ୟ କରି ରଚିତ । ସେଗୁଡ଼ିକ ମଧ୍ୟ ଆମ ଶିଶୁସାହିତ୍ୟର ଅନ୍ତର୍ଭୁକ୍ତ ହୋଇଛି ଏବଂ ଉପଯୋଗୀ ଭାବେ ହେବାରେ ଲାଗିଛି ।

ବୟସ ଅନୁକ୍ରମରେ ପଶୁପକ୍ଷୀଙ୍କ କାହାଣୀ ଆଦି ଆଦୌ ଅଯୌକ୍ତିକ ନୁହେଁ । ଆମ ଦେଶଠାରୁ ବହୁଗୁଣରେ ବିଜ୍ଞାନ ଶିକ୍ଷାରେ ସମୃଦ୍ଧ ଆମେରିକା, ରୁଷିଆ, ଇଂଲଣ୍ଡ ଆଦି ଦେଶରେ ଏତାଦୃଶ ପଶୁପକ୍ଷୀ କାହାଣୀ, ପରୀଗଳ୍ପ ଆଦି ଅପରିହାର୍ଯ୍ୟ ହୋଇ ରହିଛି । ଯୁକ୍ତି ହେଉଛି, ଆଜିର ମଣିଷ ଚନ୍ଦ୍ରରେ ପାଦ ଦେଲା ପରେ ଚନ୍ଦ୍ରକୁ ଆଉ ଦେବତା ବୋଲି ମାନିବା ଏବଂ ତାହାକୁ 'ଶଶାଙ୍କ' ରୂପେ ଦର୍ଶନ କରିବା ବିଡ଼ମ୍ବନା । ରାମାୟଣ ଓ ମହାଭାରତର ଅବାସ୍ତବ କାହାଣୀ ଏହି ପରିପ୍ରେକ୍ଷୀରେ ଗ୍ରହଣୀୟ ନୁହେଁ । ମାତ୍ର ଆମ ଶିଶୁ ସାହିତ୍ୟର ଯୁଗୋପଯୋଗୀ ଆଭିମୁଖ୍ୟ ଏହାର ଉତ୍କର୍ଷକୁ ଆତ୍ମୀକରଣ କରିବାରେ ଆଦୌ ଅସମର୍ଥ ହେବ ନାହିଁ । ରାବଣର ଦଶ ମୁଣ୍ଡ ତାହାର ଦଶ ବ୍ୟକ୍ତିର ସାମର୍ଥ୍ୟ ସଂପନ୍ନତାର ପ୍ରତୀକ ବୋଲି ବୁଝାଇବାରେ କୌଣସି ଅଯୌକ୍ତିକତା ନାହିଁ । ପୁନଶ୍ଚ ରାବଣ ରଣ କୌଶଳ ଦୃଷ୍ଟିରୁ ପ୍ରକୃତ ମୁଣ୍ଡ ସାଙ୍ଗକୁ ଅନୁରୂପ ଆଉ ନଅଗୋଟି ମୁଣ୍ଡ ଧାରଣ କରୁଥିଲା ବୋଲି କହିଲେ ଅଧିକ

ଯୁକ୍ତିଯୁକ୍ତ ହେବ । ବ୍ୟୋମଯାନ ଉଦ୍ଭାବିତ ହେଲା ପରେ ସେ ଯୁଗର ପୁଷ୍ପକ ବିମାନ ଆଦୌ ଅଳୀକ ବୋଧହେବାର ଅବକାଶ ନାହିଁ । ରାଜାପୁଅ ପକ୍ଷୀରାଜ ଘୋଡ଼ା ଚଢ଼ିବା, ବାରହାତ ଖଣ୍ଡାରେ ବୁଢ଼ୀଅସୁରୁଣୀର ମୁଣ୍ଡ କାଟିବା, କୌଶଳରେ ତିନିଅସୁରଠାରୁ କୁହୁକକଣ୍ଠାଳ, ଦଉଡ଼ି ଓ ଠେଙ୍ଗା ହାସଲ କରିବା ଶିଶୁକୁ ସାହସିକ ଅଭିଯାନ ତଥା ବୀରତ୍ୱ ପ୍ରକାଶ ପାଇଁ ପ୍ରେରଣା ଦିଏ ; ବ୍ରହ୍ମରାକ୍ଷସ ଓ ଭୂତ ଅଳୀକ ପ୍ରମାଣିତ ହୁଏ ।

ଏସବୁ ସତ୍ତ୍ୱେ ଶିଶୁସାହିତ୍ୟରେ ଗଳ୍ପ, କବିତା ଆଦିକୁ ବାସ୍ତବ କରିବାର ପ୍ରଚେଷ୍ଟାକୁ ନିରୁତ୍ସାହିତ କରାଯାଉନାହିଁ । ମାତ୍ର ବିଭିନ୍ନ ବୟଃକ୍ରମର ଆବଶ୍ୟକତାକୁ ଏବଂ ଶିଶୁ ଉପଯୋଗୀ ଗଳ୍ପ, କବିତାଦିର ସ୍ୱାଭାବିକ ସରସତା ଓ ସାବଲୀଳତାକୁ କ୍ଷୁଣ୍ଣ କରାଯାଇ ପାରିବ ନାହିଁ ।

## ଶିଶୁର ସର୍ବାଙ୍ଗୀନ ବିକାଶରେ ଶିଶୁସାହିତ୍ୟର ଆଭିମୁଖ୍ୟ :

ଶିଶୁର ସର୍ବାଙ୍ଗୀନ ବିକାଶକଳ୍ପେ ତାହାକୁ ସଚ୍ଚରିତ୍ର ନାଗରିକରେ ପରିଣତ କରିବା ହିଁ ଶିଶୁସାହିତ୍ୟର ଆଭିମୁଖ୍ୟ । ଉପଯୁକ୍ତ ଶିଶୁସାହିତ୍ୟ ଓ ଅନ୍ୟାନ୍ୟ ଶିକ୍ଷା ତାକୁ ସମାଜ ପରିପ୍ରେକ୍ଷୀରେ ହିଁ ପ୍ରଦତ୍ତ ହେବ । ଆଜିର ସମାଜ ଚରମ ଭାବରେ ବିପର୍ଯ୍ୟସ୍ତ ଓ ଦୁର୍ନୀତିଗ୍ରସ୍ତ । ତଥାପି ଶିଶୁକୁ ଚରମ ସତର୍କତା ଓ ନିଷ୍ଠା ସହକାରେ ଏହି ସମାଜରେ ହିଁ ଶିକ୍ଷା ଦେବାକୁ ହେବ । ସମାଜଠାରୁ ବିଚ୍ଛିନ୍ନ ରଖି ସତ୍‌ଶିକ୍ଷା ପ୍ରଦାନର ପ୍ରୟାସ କଲେ, ତାହା କଦାପି ସଫଳ ହେବନାହିଁ । ଶିକ୍ଷା ଶେଷରେ ଶିଶୁ ସମାଜ ଉପଯୋଗୀ ହୋଇ ନ ପାରି ଠକିଯିବ । ରାମାୟଣ ଯୁଗରେ ଋଷି ବିଭାଣ୍ଡକଙ୍କ ଆଶ୍ରମରେ ସମାଜଠାରୁ ବିଚ୍ଛିନ୍ନ ରହି ଋଷିପୁତ୍ର ଋଷ୍ୟଶୃଙ୍ଗ ଶିକ୍ଷା ପାଇବା ଫଳରେ ବିଦ୍ୟାରେ ଋଷି ହେଲେ ମଧ୍ୟ ସାମାଜିକତାରେ ଶୃଙ୍ଗୀ ବା ପଶୁ ହୋଇଥିଲେ । ତେଣୁ ତାଙ୍କର ପ୍ରତୀକ ନାମ ସମ୍ଭବତଃ ଋଷ୍ୟଶୃଙ୍ଗ ହୋଇଥିଲା । ସେ ଅସାମାଜିକ ଜୀବ ରୂପେ ଗଢି ଉଠିଥିବାରୁ ଜରତାନାମ୍ନୀ ନାରୀ ତାଙ୍କୁ ଭୁଲାଇ ଲୋମପାଦ ରାଜାଙ୍କ ରାଜ୍ୟକୁ ଯଜ୍ଞାନୁଷ୍ଠାନ ନିମନ୍ତେ ନେଇଯାଇ ପାରିଥିଲା । ମହାନ୍ ଶିକ୍ଷାବିତ୍ 'ରୁଷୋ' ତାଙ୍କ କଳ୍ପିତ ଶିଶୁଛାତ୍ର 'ଏମେଲୀ'କୁ ସମାଜଠାରୁ ପୃଥକ୍ ରଖି ଶିକ୍ଷା ଦେବାରେ ଏହି ପରିଣାମର ସମ୍ମୁଖୀନ ହୋଇଥିଲେ । ଏଣୁ ଶିଶୁକୁ ସମାଜ ମଧ୍ୟରେ ରଖି ଶିଶୁସାହିତ୍ୟ ମାଧ୍ୟମରେ ତାକୁ ଶୁଦ୍ଧ ସାମାଜିକତା ଶିକ୍ଷାଦେବା ବିଧେୟ । ଏହି ପରିପ୍ରେକ୍ଷୀରେ ଶିଶୁସାହିତ୍ୟର ଆଭିମୁଖ୍ୟ ସର୍ବାଦୌ ସାମାଜିକ ସମସ୍ୟା ଆଧାରିତ ହେବ ଓ ତହିଁରେ ତାହାର ସମାଧାନର ସନ୍ଧାନ ନିଶ୍ଚୟ ରହିବ ।

## ସାଂପ୍ରତିକ ଶିଶୁସାହିତ୍ୟର ଆଭିମୁଖ୍ୟବର୍ଗ୍ଗ :-

ସାଂପ୍ରତିକ ଶିଶୁସାହିତ୍ୟରେ ପାଠ୍ୟପୁସ୍ତକ, ପାଠ୍ୟପୁସ୍ତକ-ବହିର୍ଭୂତ ଶିଶୁ ଉପଯୋଗୀ ସାହିତ୍ୟ ଏବଂ ଶିଶୁସାହିତ୍ୟ ପତ୍ରିକା ମୁଖ୍ୟ ଆସ୍ଥାନ ଗ୍ରହଣ କରିଛି । ପୂର୍ବେ ବିଭିନ୍ନ ଲେଖକମାନେ ପାଠ୍ୟପୁସ୍ତକ ରଚନା କରି ଶିକ୍ଷା ବିଭାଗର ଅନୁମୋଦନ ପାଇଁ ଉପସ୍ଥାପନ କରୁଥିଲେ । ଯଥାଯଥ ସମୀକ୍ଷା ପରେ ସେଥିରୁ ଆବଶ୍ୟକ ସେଟ୍‌ମାନ ଅନୁମୋଦିତ ହୋଇ ବିଦ୍ୟାଳୟମାନଙ୍କରେ ପ୍ରଚଳିତ ହେଉଥିଲା । ଏପରି ପୁସ୍ତକ ଏକ ବା ଏକାଧିକ ଲେଖକମାନଙ୍କ ଦ୍ୱାରା ଉପସ୍ଥାପିତ ହେଉଥିଲା । ମାତ୍ର ସଂପ୍ରତି ସରକାର ପାଠ୍ୟପୁସ୍ତକ ରଚନା ଦାୟିତ୍ୱ କେତେକ ଲେଖକଙ୍କ ଉପରେ ନ୍ୟସ୍ତ କରୁଛନ୍ତି ଏବଂ ସେମାନଙ୍କ ରଚିତ ପାଠ୍ୟପୁସ୍ତକ ସ୍ୱତଃ ଅନୁମୋଦନ ଲାଭକରି ପ୍ରଚଳିତ ହେଉଛି । ଶିକ୍ଷାବିତ୍ ଲେଖକ ମଣ୍ଡଳୀଙ୍କ ଦ୍ୱାରା ଏହି ପୁସ୍ତକମାନ ରଚିତ ହେଉ ଥିବାରୁ ଏ ସବୁର ଉପାଦେୟତା ଓ ଉତ୍କୃଷ୍ଟତା ଅଧିକ ହେବ ବୋଲି ଆଶା କରିବା ସ୍ୱାଭାବିକ, ମାତ୍ର ତାହା ଆଶାନୁରୂପ ହେଉନାହିଁ । ବିଷୟଗୁଡ଼ିକ ଅଯଥା ଦୀର୍ଘ ଅଥଚ ପର୍ଯ୍ୟାପ୍ତ ସରସତାଯୁକ୍ତ ହେଉ ନାହିଁ । ଗଭୀର ଦୁଃଖର ବିଷୟ ଯେ ଏ ଗୁଡ଼ିକ ତ୍ରୁଟି ପ୍ରମାଦରୁ ମଧ୍ୟ ମୁକ୍ତ ନୁହେଁ । ପୂର୍ବେ ପ୍ରଚଳିତ ହେଉଥିବା ପାଠ୍ୟପୁସ୍ତକ ଗୁଡ଼ିକର ମାନ ବରଂ ଅଧିକ ଥିଲା ।

ପାଠ୍ୟପୁସ୍ତକ ବାହାରେ ଶିଶୁ ସାହିତ୍ୟମାନ ବ୍ୟକ୍ତିଗତ ଉଦ୍ୟମରେ ସୃଷ୍ଟି ହେଉଛି । ପୁରସ୍କାର ବ୍ୟବସ୍ଥା ସୂତ୍ରରେ ସରକାରୀ ପ୍ରୋତ୍ସାହନରେ ମଧ୍ୟ ଖଣ୍ଡେ ଅଧେ ପୁସ୍ତକ ପ୍ରକାଶ ପାଉଛି । ମାତ୍ର ଏ ସବୁ ଆଦୌ ପର୍ଯ୍ୟାପ୍ତ ହେଉନାହିଁ କିମ୍ବା ଏ ଗୁଡ଼ିକର ସୁଦୃଶ୍ୟତା ଓ ଯଥାର୍ଥ ମାନ ରହୁନାହିଁ ।

ଶିଶୁ ସାହିତ୍ୟ ପତ୍ରିକା ପ୍ରକାଶନ ମଧ୍ୟ ଆଶାନୁରୂପ ହେଉଛି ବୋଲି କହି ହେଉ ନାହିଁ । ସରକାର 'ଶିଶୁଲେଖା' ନାମରେ ପ୍ରକାଶ କରୁଥିବା ପତ୍ରିକା ଯଥାର୍ଥ ମାନବିଶିଷ୍ଟ କିମ୍ବା ଚିତ୍ତାକର୍ଷକ ହେଉନାହିଁ । ବ୍ୟକ୍ତିଗତ ଉଦ୍ୟମରେ କେତେଗୁଡ଼ିଏ ଶିଶୁସାହିତ୍ୟ ପତ୍ରିକା ପ୍ରକାଶ ପାଇବା ଅବଶ୍ୟ ଆଶ୍ୱାସନାର କଥା । ମାତ୍ର ପତ୍ରିକାର ମାନ ତଥା ଅଙ୍ଗସଜ୍ଜା ଗୋଟିଏ ଦୁଇଟିକୁ ଛାଡ଼ିଦେଲେ ଅନ୍ୟ ଗୁଡ଼ିକ ଅତ୍ୟନ୍ତ ନିମ୍ନମାନ ବିଶିଷ୍ଟ । ଅନେକ ପତ୍ରିକାରେ ଶହ ସଂଖ୍ୟାରେ ତ୍ରୁଟି ପ୍ରମାଦ ମଧ୍ୟ ରହୁଛି । ଏପରିକି କେତେକ ସଂପାଦକଙ୍କ ନିଜ ଲେଖାରେ ବହୁ ଭ୍ରମ ପ୍ରମାଦ ଦେଖା ଯାଉଛି । କେତେକ ପତ୍ରିକା ପ୍ରକାଶ ନ ପାଇଲେ ବରଂ ଶିଶୁମାନଙ୍କର ମଙ୍ଗଳ ହୁଅନ୍ତା । ସେମାନେ ମୁଦ୍ରିତ ପତ୍ରିକାରୁ ଭ୍ରମପ୍ରମାଦକୁ ଶିଖିବାରୁ ରକ୍ଷାପାନ୍ତେ ।

ଏହି ପରିପ୍ରେକ୍ଷୀରେ ଶିଶୁ ସାହିତ୍ୟ ଶିଶୁମାନଙ୍କର ସର୍ବାଙ୍ଗୀନ ବିକାଶ ଦୃଷ୍ଟିରୁ ସଚିତ୍ର, ତ୍ରୁଟିଶୂନ୍ୟ, ବ୍ୟୟଃକ୍ରମ ଉପଯୋଗୀ ଓ ଚିତ୍ତାକର୍ଷକ ହେବା ଉଚିତ । ସାଂପ୍ରତିକ ଯୁଗର ଆବଶ୍ୟକତା ଦୃଷ୍ଟିରୁ ବିଜ୍ଞାନ ଓ ବୈଷୟିକ ଶିକ୍ଷା ଶିଶୁ ସାହିତ୍ୟର ମୁଖ୍ୟଭାଗ ହେଉ ଏବଂ ଆଜିର ବିକ୍ଷୁବ୍ଧ ସମାଜର ଉତ୍ତରଣ ନିମନ୍ତେ ଶିଶୁମାନଙ୍କର ଚରିତ୍ର ଗଠନ ନିମନ୍ତେ ପର୍ଯ୍ୟାପ୍ତ ଉପାଦାନ ରହୁ ।

## ଶିଶୁସାହିତ୍ୟ ଆଭିମୁଖ୍ୟ ସାହିତ୍ୟକମାନଙ୍କର ଧ୍ୟେୟ ହେଉ :–

ବିରାଟ ସାହିତ୍ୟ-ସୌଧ ଶିଶୁସାହିତ୍ୟର ଭିତ୍ତି ଉପରେ ଦଣ୍ଡାୟମାନ–ଏହା ସର୍ବବାଦୀ-ସମ୍ମତ । ଏହି ପରିପ୍ରେକ୍ଷୀରେ ସକଳଶ୍ରେଣୀର ଶିକ୍ଷିତ ବ୍ୟକ୍ତି ଶିଶୁ ସାହିତ୍ୟର ଆଭିମୁଖ୍ୟକୁ ଶକ୍ତିଶାଳୀ କରିବା ନିମନ୍ତେ ଉଦ୍ୟମୀ ହେବା ବାଞ୍ଛନୀୟ । ଅଭିଭାବକ, ବଦାନ୍ୟ ବ୍ୟକ୍ତି ଓ ସରକାର ଏହାର ପୃଷ୍ଠପୋଷକତା କରିବା ସର୍ବାଦୌ ଆବଶ୍ୟକ । ଏ ଦେଶର ଯେ କୌଣସି ଶିକ୍ଷିତ ବ୍ୟକ୍ତି ନିଜର ଶିଶୁ ପୁତ୍ରକନ୍ୟା ବା ଭ୍ରାତା ଭଗିନୀମାନଙ୍କ ପାଇଁ ନିୟମିତ ଭାବରେ ଶିଶୁସାହିତ୍ୟ ପତ୍ରିକା ତଥା ଶିଶୁପୁସ୍ତକ କିଣିବାକୁ ବ୍ରତ ବିଗ୍ରହିବା ଉଚିତ । ଶିଶୁ ସାହିତ୍ୟର ଆଭିମୁଖ୍ୟ ସଫଳତାର ସହିତ ଆଗେଇ ଚାଲୁ, ଏହା ହିଁ ସମସ୍ତଙ୍କର ଧ୍ୟେୟ ହେଉ ।

●

# ଶିଶୁ ସାହିତ୍ୟିକର କର୍ତ୍ତବ୍ୟ

ଅଧ୍ୟାପିକା ଶ୍ରୀମତୀ ରେଖା ଦାସ

ବର୍ଷ ପରେ ବର୍ଷ ଗଡ଼ି ଯାଉଥିଲେ ମଧ୍ୟ ଆମର ଶିଶୁମାନେ ଚିର ଅବହେଳିତ ହୋଇ ରହି ଯାଇଛନ୍ତି । ପ୍ରତ୍ୟେକ ବିବେକବାନ୍ ବ୍ୟକ୍ତିର ଦୃଷ୍ଟି ସେଥିପ୍ରତି ଆକର୍ଷଣ କରିବାକୁ ଏବଂ ସେହି ଶିଶୁମାନଙ୍କର ସମସ୍ୟାମାନ ଜଗତ୍‌ବାସୀଙ୍କ ସମ୍ମୁଖରେ ପ୍ରତିଭାତ କରାଇବାକୁ ୧୯୭୯ ମସିହାକୁ ଆନ୍ତର୍ଜାତିକ ଶିଶୁବର୍ଷ ରୂପେ ସମଗ୍ର ବିଶ୍ୱରେ ପାଳନ କରା ଯାଇଥିଲା । "ଶିଶୁମାନେ ଦେଶର ଓ ଜାତିର ଭବିଷ୍ୟତ," "ଶିଶୁମାନେ ହିଁ ଆମର ଶେଷ ଆଶା, ଶେଷ ଭରସା ।"— ଏହା ଆମ୍ଭେମାନେ ବାରମ୍ବାର ଉଚ୍ଚାରଣ କରୁଥିଲେ ବି ସେମାନଙ୍କର ସମସ୍ୟା ପ୍ରତି ସାମାନ୍ୟ ଦୃଷ୍ଟି ନ ଦେଇ ଆମ୍ଭମାନଙ୍କର ମସ୍ତକ ତ କାହିଁ ଲଜ୍ଜାରେ ଅବନତ ହେଉ ନାହିଁ ? କେଉଁଠି 'ଗଣ୍ଡା', ବା 'ତିମି' କିମ୍ବା 'ବେଙ୍ଗ' ଅଥବା 'କଇଁଛ' ଏପରିକି 'ରଣାସାପ' ବଂଶର ବିଲୟରେ ଆମ୍ଭେମାନେ ଅତିମାତ୍ରାରେ ଉଦ୍‌ବେଗ ପ୍ରକାଶ କରୁଥିଲା ବେଳେ, ଆମ୍ଭମାନଙ୍କର ଚେତନା ଓ ଦୃଷ୍ଟିର ଅନ୍ତରାଳରେ ରହି ଏହି ଶିଶୁମାନଙ୍କର ଶୈଶବାବସ୍ଥା ଅତି ଚଞ୍ଚଳ ଅପସରି ଯାଇ ସେମାନଙ୍କୁ ଅକାଳରେ କିଶୋର କରି ଦେଉଥିଲେ ମଧ୍ୟ ଆମ୍ଭମାନଙ୍କର ନିଦ୍ରାଭଙ୍ଗ ହେଉ ନାହିଁ ।

କେବଳ ଭାରତ କାହିଁକି ପୃଥିବୀର ସମସ୍ତ ଦେଶରେ ରାଜନୀତିଜ୍ଞଙ୍କ ଠାରୁ ଆରମ୍ଭ କରି ସମାଜସେବୀ, ଅଭିଭାବକମାନେ ଶିଶୁମାନଙ୍କର ଏହି ଅବହେଳିତ ଅବସ୍ଥା ପ୍ରତି ଯଥାର୍ଥ ଦୃଷ୍ଟି ଦେଇ ଜାତିର, ଦେଶର ଭବିଷ୍ୟତମାନଙ୍କୁ ଏହି ଦାରୁଣ ଅବସ୍ଥାରୁ ରକ୍ଷା କରିବାକୁ—ସମସ୍ୱରରେ ଆହ୍ୱାନ କରି ଆସୁଛନ୍ତି । କିନ୍ତୁ ହାୟ ! ଏ ସମସ୍ତ ସାଧୁ ଚିନ୍ତା, ଚେତନା କେବଳ ଫମ୍ପା ଆବାଜରେ ହିଁ ରହି ଯାଉଅଛି ।

ଗଣନା କରି ଦେଖା ହୋଇଅଛି ଯେ ଆମ ଦେଶରେ ୬ରୁ ୧୧ ବର୍ଷ ମଧ୍ୟରେ (ପ୍ରାଥମିକ ବିଦ୍ୟାଳୟ ସ୍ତରର) ଶତକଡ଼ା ୩୦ ଭାଗ ଶିଶୁ ଏବଂ ୧୧ରୁ ୧୪ ବର୍ଷ ମଧ୍ୟରେ (ନିମ୍ନ ମାଧ୍ୟମିକ ସ୍ତରର) ପ୍ରାୟ ଶତକଡ଼ା ୭୦ ଭାଗ ଶିଶୁ କୌଣସି ରକମର ଶିକ୍ଷା ଲାଭର ସୁଯୋଗ ପାଉ ନାହାନ୍ତି । ଅନ୍ୟ ଏକ ଗଣନାରୁ ଦେଖାଯାଏ ଯେ ୪ରୁ ୧୪ ବର୍ଷର ଶିଶୁଙ୍କ ମଧ୍ୟରୁ ପ୍ରାୟ ଶତକଡ଼ା ୮୦ ଭାଗ ଶିଶୁ କୌଣସି ପ୍ରକାର ଶିକ୍ଷା ଗ୍ରହଣରୁ ବଞ୍ଚିତ ହୋଇ ପରିବାରର ଭରଣ ପୋଷଣରେ ନିଜକୁ ନିୟୋଜିତ କରିବାକୁ ବାଧ୍ୟ ହୁଅନ୍ତି । ଭାରତ ବର୍ଷରେ ଯେତେ ସଂଖ୍ୟକ ଶିଶୁ ଶ୍ରମିକ ଦେଖା ଯାଆନ୍ତି, ପୃଥିବୀର ଅନ୍ୟ କୌଣସି ଦେଶରେ ସେତେ ଶିଶୁ ଶ୍ରମିକ ଦେଖା ଯାଆନ୍ତି ନାହିଁ । ଏହି ଶିଶୁମାନଙ୍କର ଧନ୍ଦା ଭିକ୍ଷା କରିବାଠାରୁ ଆରମ୍ଭ କରି କାହା ଘରେ ଭୃତ୍ୟଗିରି, କୌଣସି କଳକାରଖାନାରେ ଶ୍ରମିକ ଗିରି କରିବା ମଧ୍ୟରେ ସୀମିତ । ତେଣୁ ସର୍ବାନ୍ତଃକରଣରେ ଆମ ଦେଶର ଶିଶୁମାନେ ଅନ୍ୟ ଦେଶର ଶିଶୁମାନଙ୍କ ଅପେକ୍ଷା ଅଧିକ ଦଳିତ, ନିଷ୍ପେଷିତ ଓ ଅବହେଳିତ— ଏଥିରେ ଦ୍ୱିମତ ନାହିଁ ।

ଏକ ହିସାବରୁ ଜଣା ଯାଇଛି ଯେ ପ୍ରତିବର୍ଷ ୪୦ନିୟୁତ ଶିଶୁ ଅକାଳ ମୃତ୍ୟୁ ବରଣ କରିଥାନ୍ତି । ଏହାକୁ ବିଚାର କରି ଚଳିତ ବର୍ଷ ଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିବା ସପ୍ତମ ଗୋଷ୍ଠୀ ନିରପେକ୍ଷ ସମ୍ମିଳନୀରେ କ୍ୟୁବାର ରାଷ୍ଟ୍ରପତି ଫିଡ଼େଲ କାଷ୍ଟ୍ରୋ କହିଥିଲେ ଯେ— "ଅକାଳ

ମୃତ୍ୟୁ ବରଣ କରୁଥିବା ପ୍ରତ୍ୟେକ ଶିଶୁ ପାଇଁ ଏକ ମିନିଟ କରି ନୀରବତା ପାଳନ କରଗଲେ, ବର୍ଷ ପରେ ବର୍ଷ ସରିଯାଇ ୨୦୦୦ ମସିହା ଆସିଯିବ ସିନା, ଆମର ନୀରବତା ଭଙ୍ଗିବାର ସୁଯୋଗ ଆସିବ ନାହିଁ ।"

ଏହି ପରିପ୍ରେକ୍ଷୀରେ ଆମ ସମାଜରୁ ଏହି ଭୟାବହ ପରିସ୍ଥିତିକୁ ଦୂର କରିବାରେ ଶିଶ ସାହିତ୍ୟିକମାନଙ୍କର ଭୂମିକା ଯେ ଅତୀବ ଗୁରୁତ୍ୱପୂର୍ଣ୍ଣ ଏଥିରେ ସନ୍ଦେହ ନାହିଁ । ଶିକ୍ଷା ଲାଭରୁ ବଞ୍ଚିତ ହେବା ଏବଂ ଶୈଶବରୁ ପରିବାରର ଭରଣପୋଷଣ ଦାୟିତ୍ୱ ବହନ କରିବା ଆମ ଦେଶରେ ଶିଶୁମାନଙ୍କ ପ୍ରତି ଅବହେଳାର ଦୁଇଟି ନିଦର୍ଶନ । ଶିଶୁମାନଙ୍କ ପ୍ରତି ତୃତୀୟ ପ୍ରକାର ଅବହେଳା ହେଉଛି ସେମାନଙ୍କର 'ଖାଦ୍ୟାଭାବ' । ଭାରତବର୍ଷର ପ୍ରାୟ ଶତକଡ଼ା ୯୦ ଭାଗ ଶିଶୁ ଖାଦ୍ୟାଭାବ ଜନିତ ନାନା ରୋଗ ବିକାରରୁ ଭୋଗିଥାନ୍ତି । ଏଥିମଧ୍ୟରୁ 'ପ୍ରୋଟିନ' ବା 'ପୁଷ୍ଟିସାର' ଖାଦ୍ୟର ଅଭାବରୁ ଘଟୁଥିବା ବିକୃତି ଯାହାକୁକି ଡାକ୍ତରମାନେ "କ୍ୱାସିଅରକର ସିଣ୍ଡ୍ରୋମ" କହିଥାନ୍ତି, ତାହା ମୁଖ୍ୟ ଅଟେ । ଏହି ରୋଗାକ୍ରାନ୍ତ ଶିଶୁମାନେ ଜୀବନବ୍ୟାପୀ ଶାରୀରିକ, ମାନସିକ ଓ ବୌଦ୍ଧିକ ସ୍ତରରେ ଦୁର୍ବଳ ହୋଇ ପଡ଼ନ୍ତି । ଏ ସବୁ ସାଙ୍ଗକୁ ଶିଶୁମାନଙ୍କର ସାଧାରଣ ସ୍ୱାସ୍ଥ୍ୟ ଏବଂ ସେମାନଙ୍କର ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ନ ଦେବା ଏକ ଚତୁର୍ଥ ଅବହେଳା । ଏଥିପାଇଁ ଅନେକ କ୍ଷେତ୍ରରେ ଶିଶୁମାନଙ୍କର ଅକାଳ ମୃତ୍ୟୁ ମଧ୍ୟ ହୋଇଥାଏ । ପରିଶେଷରେ ଆମ ଦେଶରେ ବିଶେଷତଃ ଆମ ରାଜ୍ୟ ଓଡ଼ିଶାରେ ଉପର୍ଯ୍ୟୁକ୍ତ ଚାରିଗୋଟି ଅବହେଳା ବ୍ୟତୀତ ଶିଶୁମାନେ ଏକ ସାଙ୍ଘାତିକ ପଞ୍ଚମ ଅବହେଳାର ଶୀକାର ହୋଇଥାନ୍ତି । ତାହା ହେଲା ସେମାନଙ୍କର ମାନସିକ ବିକାଶ ଏବଂ ମନୋରଞ୍ଜନ ନିମନ୍ତେ ଉପଯୁକ୍ତ ଶିକ୍ଷା ଓ ସାହିତ୍ୟର ଅଭାବ । ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ଦାରିଦ୍ର୍ୟ, ଅଶିକ୍ଷା ଓ ନିକୃଷ୍ଟ ଧରଣର ଜୀବନଯାପନର ମାନ ଯେ ଏ ସବୁର ମୌଳିକ କାରଣ, ଏଥିରେ ସନ୍ଦେହ ନାହିଁ । ପିତାମାତା ପ୍ରଭୃତି ଅଭିଭାବକମାନଙ୍କର ଶିକ୍ଷା-ଦୀକ୍ଷା, ସାଧାରଣଜ୍ଞାନର ଅଭାବ, ବିଶେଷତଃ ମା'ମାନଙ୍କର ଉପଯୁକ୍ତ ଶିକ୍ଷାର ଅଭାବ, ଏ ସମସ୍ତ ଅବାଞ୍ଛିତ ପରିସ୍ଥିତିର କାରଣ ବୋଲି ମନେ ହୁଏ । ନେପୋଲିଅନ୍‌ଙ୍କ ମତ "ମତେ ଗୁଡ଼ିଏ ଉପଯୁକ୍ତ ମା ଦିଅ । ମୁଁ ଗୋଟିଏ ଯୋଗ୍ୟ ଦେଶ ଓ ଜାତି ଦେବି"ର ଯଥାର୍ଥତା ସହଜରେ ଅନୁମେୟ । ଏହି ସମସ୍ତ ଓ ବିଭିନ୍ନ କାରଣରୁ ଆମ ଦେଶର ଶିଶୁମାନେ ଅଧିକ ଅନୁନ୍ନତ ଏବଂ ସେମାନଙ୍କର ବିକାଶ ଯଥାର୍ଥ ଭାବରେ ହୋଇ ପାରୁନାହିଁ । ଆମ ଦେଶର ଯୁବସମାଜ ସାଧାରଣ ଶିକ୍ଷା, ତାତ୍ତ୍ୱିକ ଜ୍ଞାନ ଓ ବୈଜ୍ଞାନିକ ଅଗ୍ରସରତା ବିଚାରରୁ ପୃଥିବୀର ଅନ୍ୟାନ୍ୟ ଦେଶର ଯୁବସମାଜ ଅପେକ୍ଷା ପଛୁଆ । ଏହାର ସୁଦୂର ପ୍ରସାରୀ ପ୍ରଭାବ ଯୋଗୁ ଅନ୍ୟାନ୍ୟ ଉନ୍ନତ ଓ ସମୃଦ୍ଧ ଦେଶମାନଙ୍କ ହାତରେ ଓ ଇଚ୍ଛାରେ ଆମ ଦେଶର ଭାଗ୍ୟ ଓ ଭବିଷ୍ୟତ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ନିୟନ୍ତ୍ରିତ ହେଉ ଅଛି । ଅଜ୍ଞାନତା, ଦାରିଦ୍ର୍ୟ ଓ ଅନ୍ଧବିଶ୍ୱାସ ଆମ୍ଭମାନଙ୍କୁ ଏପରି ଭାବରେ ଆଚ୍ଛନ୍ନ କରି ରଖିଛି ଯେ ସେଥିରୁ ଊର୍ଦ୍ଧ୍ୱକୁ ଯାଇ ଏ ସବୁ ସାମାଜିକ ବ୍ୟାଧି ଓ ବୈକଲ୍ୟର ସମାଧାନ ତଥା ନିରାକରଣ ଚିନ୍ତା କରିବା ଅତ୍ୟନ୍ତ ଆୟାସସାଧ୍ୟ ମନେ ହୁଏ ।

ଏହି ପରିପ୍ରେକ୍ଷୀରେ ଶିଶୁ ସାହିତ୍ୟ ଓ ଶିଶୁସାହିତ୍ୟିକମାନଙ୍କର ଦାୟିତ୍ୱ ଯେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଗୁରୁତ୍ୱପୂର୍ଣ୍ଣ ଏଥିରେ ତିଳାର୍ଦ୍ଧେ ସନ୍ଦେହ ନାହିଁ । ସାହିତ୍ୟ ସାମାଜିକ ବିବର୍ତ୍ତନର ଏକ ସଫଳ ଓ ସହଜ ଆୟୁଧ । ଯାହା ନିୟମ, ବଳ, କଳ, କୌଶଳରେ କରିବା ସମ୍ଭବ ହୁଏ ନାହିଁ, ତାକୁ ସହଜରେ ଗପ, ଗୀତ ଓ ନାଟକ ବା ଏକାଙ୍କିକା ସାହାଯ୍ୟରେ ବୁଝେଇ ଦେଇ ହୁଏ ଏବଂ ମନେଇ ଦେଇ ହୁଏ । ସାହିତ୍ୟିକ କଳ୍ପନା, ଚେତନ ଓ କୃତି ମନୁଷ୍ୟର ମନକୁ ସହଜରେ ପ୍ରଭାବିତ କରେ । ତେଣୁ ଶିଶୁ ସାହିତ୍ୟିକମାନେ ସାଧାରଣ ମଣିଷ ଅପେକ୍ଷା ଯେ ଅଧିକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରିଥାନ୍ତି ଏଥିରେ ସନ୍ଦେହ ନାହିଁ । ଶିଶୁମାନଙ୍କର ମନୋରଞ୍ଜନ ପାଇଁ ଉପଯୁକ୍ତ ଶିଶୁ ପତ୍ରପତ୍ରିକା ଓ ପୁସ୍ତକର ଅଭାବ ଏବଂ ଅଭିଭାବକ ଆଦି

ପିତାମାତାଙ୍କର ଦାୟିତ୍ୱବୋଧ ତଥା ଯଥାର୍ଥ ଶିକ୍ଷାର ଅଭାବ ଆମର ଶିଶୁମାନଙ୍କର ଅଧୋଗତିର କାରଣ ବୋଲି ମନେହୁଏ । ଆମର ଶିଶୁ ସାହିତ୍ୟିକ ମାନେ ଶିଶୁମାନଙ୍କର ମନୋରଞ୍ଜନ ନିମନ୍ତେ ସାହିତ୍ୟ ରଚନା କରିବା ସଙ୍ଗେ ସଙ୍ଗେ ଏ ପ୍ରକାର ଅଭିଭାବକମାନଙ୍କୁ ଯଥାର୍ଥ ଶିକ୍ଷାଦାନ କରି ନୂତନ ଦିଗ୍‌ଦର୍ଶନ ଦେବା ଉଚିତ । ବାସ୍ତବିକ୍ ଏହି ବିସ୍ତାରରୁ ଶିଶୁର ସଜ୍ଞାକୁ ମଧ୍ୟ ପୁନର୍ବିଗ୍ଭର କରାଯାଇ ପାରେ । ବୟସ ଦୃଷ୍ଟିରୁ ଏକ ନିର୍ଦ୍ଦିଷ୍ଟ ବୟସ ସୀମାକୁ ଶିଶୁ ଅବସ୍ଥା କୁହାଯାଇଥାଏ । କିନ୍ତୁ ଜ୍ଞାନ ଦୃଷ୍ଟିରୁ ବିଗ୍ଭର କଲେ ଜଣେ ବୟସରେ ସାନ ହେଉ ବା ବଡ଼ ହେଉ ଏକ ନୂତନ ଜ୍ଞାନ ଆହରଣ ପାଇଁ ସେହି ଜ୍ଞାନ ନଥିବା ପ୍ରତ୍ୟେକ ବ୍ୟକ୍ତି ଜଣେ ଜଣେ ଶିଶୁ ଅଟନ୍ତି । ତେଣୁ ଶିଶୁ ସାହିତ୍ୟିକମାନେ ନିଜର ରଚନା ମାଧ୍ୟମରେ ଉଭୟ ବୟସ ତଥା ଜ୍ଞାନ ଦୃଷ୍ଟିରୁ ଶିଶୁମାନଙ୍କର ସୁମହତ ବିକାଶ ନିମନ୍ତେ ଲକ୍ଷ୍ୟ ରଖିବା ଉଚିତ । ଆମ ରାଜ୍ୟରେ ସାକ୍ଷର ହାର ସର୍ବନିମ୍ନ ହୋଇଥିବାରୁ ଶିଶୁ ସାହିତ୍ୟ ମାଧ୍ୟମରେ ଉଦ୍ଦିଷ୍ଟ ଶିକ୍ଷା ଓ ତତ୍ତ୍ୱକୁ ନାଟକ, ଚିତ୍ର, ଗୀତ, ଡାକକାଠିଆ ଆଦି ସାହାଯ୍ୟରେ ଅଧିକ ଫଳପ୍ରଦ ଓ ଲୋକପ୍ରିୟ କରିବା ଉଚିତ ଏବଂ ଏ ସମସ୍ତ ଉଦ୍ୟମ କେବଳ ସହରାଞ୍ଚଳରେ ନ ହୋଇ ବରଂ ଅନୁନ୍ନତ ମଫସଲ ଅଞ୍ଚଳରେ ଅଧିକ ମାତ୍ରାରେ ଆୟୋଜିତ ହେବା ଉଚିତ ।

ସମୟ ବଦଳିବା ସଙ୍ଗେ ସଙ୍ଗେ ବିଜ୍ଞାନ, ଯନ୍ତ୍ରଶିଳ୍ପ, ରାଜନୀତି, ସାହିତ୍ୟ, ସାମାଜିକ ମାନ ସବୁ କିଛିରେ ପରିବର୍ତ୍ତନ ଆସିଛି । ଆଜିର ଅଭିଭାବକମାନଙ୍କର ଶୈଶବାବସ୍ଥାରେ ଏ ସବୁ ଯାହା ଥିଲା ଆଜି ଏଇ ଯୁଗରେ ତାହାର କେତେ ପରିବର୍ତ୍ତନ ହେଉଛି ! ଆଉ ୧୬ ବର୍ଷ ପରେ ନୂତନ ଶତାବ୍ଦୀ ଆସିବ । ସେହି ଯୁଗୋପଯୋଗୀ ପରିବର୍ତ୍ତନକୁ ଆଖିରେ ରଖି, ସମୟ ସହିତ ତାଳ ଦେଇ ଯଦି ଆଜିର ଶିଶୁ ସାହିତ୍ୟିକମାନେ ସାହିତ୍ୟ ସୃଷ୍ଟି କରନ୍ତି, ତେବେ ତାହା ପ୍ରକୃତରେ ଶିଶୁମାନଙ୍କୁ ଆଗାମୀ ଶତାବ୍ଦୀର ସାର୍ଥକ ଦାୟାଦ ରୂପେ ଗଢ଼ି ପାରିବ ।

●

> "ବଡ଼ କଥାଟିଏ ବଡ଼ ଲୋକଙ୍କୁ କହିବା ବା ବୁଝାଇବା ଯେତେ ସହଜ, ଛୋଟ କଥାଟିଏ ଛୋଟ ପିଲାଙ୍କୁ କହିବା ବା ବୁଝାଇବା ସେତିକି କଷ୍ଟ । ବଡ଼ କଥା କହୁଥିବା ଲୋକ ଜଣେ ପଣ୍ଡିତ ହୋଇ ପାରନ୍ତି, କିନ୍ତୁ ଛୋଟ ପିଲାଙ୍କ ମନକୁ ଛୁଇଁବା ଭଳି ଛୋଟ କଥାଗୁଡ଼ିଏ କହୁଥିବା ଲୋକ ହିଁ ବାସ୍ତବରେ ଜଣେ ବଡ଼ ସାହିତ୍ୟିକ ।"
>
> ବିଶ୍ୱକବି ରବୀନ୍ଦ୍ରନାଥ

# ସାମ୍ପ୍ରତିକ ଓଡ଼ିଆ ଶିଶୁ ସାହିତ୍ୟର ଏକ ସମୀକ୍ଷା

ଅଧ୍ୟାପକ ଦିଗରାଜ ବ୍ରହ୍ମା

ଅଧୁନା ଭାରତୀୟ ଶିଶୁ ସାହିତ୍ୟଜଗତରେ ଏକ ନୂତନ ଜାଗରଣ ଦେଖାଯାଇ ଅଛି । ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟରେ ଶିଶୁର ମନଲାଖି ସାହିତ୍ୟ ପ୍ରସ୍ତୁତ କରିବାକୁ ଯେପରି ନୂତନ ନୂତନ ଉଦ୍ୟମ ଅବ୍ୟାହତ ରହିଛି ସେଥିରୁ ଆମ ଓଡ଼ିଆ ଶିଶୁ ସାହିତ୍ୟ ବାଦ ପଡ଼ିନାହିଁ । ସର୍ବଭାରତୀୟ ସ୍ତରରେ ଜାତୀୟ ଶିକ୍ଷା ଓ ଗବେଷଣା ପରିଷଦ, ଜାତୀୟ ପୁସ୍ତକ ସଂସ୍ଥା, ଶିଶୁ ପୁସ୍ତକ ସଂସ୍ଥା ଆଦି ଏ ଦିଗରେ କାର୍ଯ୍ୟରତ ଥିଲାବେଳେ ଓଡ଼ିଶାରେ ରାଜ୍ୟଶିକ୍ଷା ଓ ଗବେଷଣା ପରିଷଦ, ଓଡ଼ିଶା ସରକାରଙ୍କ 'ଶିଶୁଲେଖା' ପ୍ରକାଶନ ସଂସ୍ଥା ଓ ବିଭିନ୍ନ ଘରୋଇ ସଂସ୍ଥା ଏବଂ ବ୍ୟକ୍ତିଗତ ଉଦ୍ୟମରେ ପ୍ରକାଶିତ ହେଉଥିବା ଶିଶୁପୁସ୍ତକ, ପତ୍ରପତ୍ରିକା ଆଦି ଶିଶୁ ସାହିତ୍ୟ ପ୍ରକାଶନର ମହାଭାରତୀୟ ସ୍ରୋତରେ ସାମିଲ ହୋଇଛନ୍ତି । କିନ୍ତୁ ଏକଥା ସତ ଯେ, ଶିଶୁ ସାହିତ୍ୟ ନାମରେ ପ୍ରକାଶିତ ହେଉଥିବା ଅନେକ ଲେଖା ଶିଶୁର ପସନ୍ଦଯୋଗ୍ୟ ହେଉନାହିଁ । ଆଜିର ଶିକ୍ଷାବିତ୍‌କୁ ଶିଶୁ ସାହିତ୍ୟର ପରିମାଣାତ୍ମକ ପରିପ୍ରକାଶରେ ଆନନ୍ଦବିଭୋର ହେଲାବେଳକୁ ଶିଶୁ ସାହିତ୍ୟର ଗୁଣାତ୍ମକ ଦୃଷ୍ଟିରୁ ଦୁଃଖିତ ହେବାକୁ ପଡ଼େ । ଏହାର କାରଣ : (୧) ସାହିତ୍ୟର ବିଷୟବସ୍ତୁ, (୨) ଉପସ୍ଥାପନାର ଶୈଳୀ, (୩) ଭାଷା, (୪) ଚରିତ୍ର ଚିତ୍ରଣ, (୫) ବିଶଦୀକୃତ ଚିତ୍ର, (୬) କାଗଜ ଓ (୭) ମୁଦ୍ରଣ ପରିପାଟୀ ଅନେକ କ୍ଷେତ୍ରରେ ନିତାନ୍ତ ଅସନ୍ତୋଷଜନକ ।

## ଶିଶୁ ସାହିତ୍ୟିକର ସଜ୍ଞା :

ଶିଶୁ ସାହିତ୍ୟିକ କହିଲେ ସାଧାରଣତଃ ଦୁଇଟି ପର୍ଯ୍ୟାୟଭୁକ୍ତ ଗୋଷ୍ଠୀକୁ ବୁଝାଏ । ପ୍ରଥମତଃ ଶିଶୁ ପାଇଁ ରଚନା କରୁଥିବା ବୟସ୍କ ସାହିତ୍ୟିକ ଓ ଦ୍ୱିତୀୟତଃ ଶିଶୁମାନଙ୍କ ପାଇଁ ଲେଖୁଥିବା ନିଜେ ଶିଶୁ ବା ତରୁଣ ସାହିତ୍ୟିକ । ସାହିତ୍ୟର ସ୍ରଷ୍ଟା ନିଜେ ଶିଶୁ । ମାତ୍ର ବ୍ୟାପକ ଦୃଷ୍ଟିକୋଣରୁ ବିଚାର କଲେ ବୟସ୍କ ସାହିତ୍ୟିକ ମାନଙ୍କୁ ହିଁ ଶିଶୁ ସାହିତ୍ୟିକ ବୁଝାଏ । କାରଣ ସେମାନେ ଶିଶୁର ରୁଚି, ମନସ୍ତତ୍ତ୍ୱ, ସାହିତ୍ୟର ବିଭିନ୍ନ ବିଭବ ଆଦିକୁ ବିଚାରକୁ ନେଇ ଶିଶୁ ପାଇଁ ସାହିତ୍ୟ ସୃଷ୍ଟି କରିଥାନ୍ତି । ମାତ୍ର ଉପର୍ଯ୍ୟୁକ୍ତ ପରିସ୍ଥିତି ଓ ପରିବେଶକୁ ବିଚାରକୁ ନ ନେଇ ସାହିତ୍ୟ ରଚନା କରୁଥିବା ତଥାକଥିତ ପ୍ରକାଶିତ ଅନେକ ଲେଖାର ଲେଖକ ଶିଶୁ ସାହିତ୍ୟିକର ସଜ୍ଞାର ବେଷ୍ଟନୀ ମଧ୍ୟକୁ ଆସି ପାରିବେ ନାହିଁ । ଏତଦ୍‌ବ୍ୟତୀତ ଶିଶୁମାନଙ୍କର ମାନସିକ ପରିପକ୍ୱତା ଘଟି ନଥିବାରୁ ଅଧିକାଂଶ କ୍ଷେତ୍ରରେ ସେମାନଙ୍କ ସାହିତ୍ୟ ଶିଶୁ ସାହିତ୍ୟ ପଦବାଚ୍ୟ ହୋଇ ନଥାଏ । ସେଥିପାଇଁ ସେମାନଙ୍କ ଲେଖାକୁ ଆବଶ୍ୟକୀୟ ପରିବର୍ତ୍ତନ କରି ସାଧାରଣତଃ ଅଭିଭାବକ, ଶିକ୍ଷକ ଓ ସଂପାଦକଗଣ ପ୍ରକାଶ କରିଥାନ୍ତି ।

## ଶିଶୁ ସାହିତ୍ୟିକର ସ୍ଥାନ :

ଶିଶୁ ସାହିତ୍ୟିକର ସ୍ଥାନ ସଂପର୍କରେ ଆଲୋଚନା କରିବା ଏକ ଧୃଷ୍ଟତା ମାତ୍ର । ମାତ୍ର ଗବେଷଣାର ପରିବେଶ ହିଁ ଅନେକ ସମୟରେ ଗବେଷକମାନଙ୍କୁ ଶିଶୁ ସାହିତ୍ୟିକର ସ୍ଥାନ କ'ଣ ରହିବା ଉଚିତ, କ'ଣ ନ ରହିବା ଉଚିତ, ଏ ଚିନ୍ତା କରିବାକୁ ସୁଯୋଗ ଦେଇଥାଏ । ଭାରଲଟ ହର୍ଥ ଓ ଡୋରିସ ଓ୍ୟଙ୍ଗ ସେମାନଙ୍କ ଶିଶୁ ସାହିତ୍ୟ ପୁସ୍ତକରେ ଏ ସଂପର୍କରେ ଉଲ୍ଲେଖ କରିଛନ୍ତି । ବୟସ୍କମାନଙ୍କ ପାଇଁ ସାହିତ୍ୟ ସୃଷ୍ଟି କରୁଥିବା ଲେଖକ ଓ

ଶିଶୁମାନଙ୍କ ପାଇଁ ଲେଖୁଥିବା ସାହିତ୍ୟିକମାନଙ୍କ ମଧ୍ୟରେ କେତୋଟି ବିଶେଷ ଦୃଷ୍ଟିକୋଣକୁ ଛାଡ଼ି ଦେଲେ କୌଣସି ତଫାତ୍ ନାହିଁ । ଜଣେ ଶିଶୁଡାକ୍ତର ଔଷଧର ଗୁଣ ଅଧ୍ୟୟନ କରି ଶିଶୁର ଉପଯୋଗୀ କରି ଶିଶୁକୁ ଦେଇଥାନ୍ତି ଜଣେ ଶିଶୁ ସାହିତ୍ୟିକ ସମସ୍ତ ସାହିତ୍ୟର ବିଭବ ଆଦିକୁ ଆଲୋଚନା କରି ଶିଶୁ ମନଲାଖି ସାହିତ୍ୟ ସୃଷ୍ଟିକରେ ।

ଏତିକି ଜ୍ଞାନ ହିଁ ମୋଟାମୋଟି ଜଣେ ସାହିତ୍ୟିକଙ୍କ ଠାରୁ ସମସ୍ତେ ଆଶା କରିଥାନ୍ତି । ଏହି ଜ୍ଞାନଟିକୁ ହାସଲ କରିବା ଲାଗି ଶିଶୁ ସାହିତ୍ୟିକଙ୍କୁ ସାଧାରଣତଃ କେତୋଟି ବିଷୟବସ୍ତୁ ଉପରେ ଦୃଷ୍ଟି ଦେବାକୁ ପଡ଼େ ।

୧ । ଶିଶୁ ପାଇଁ ଉଦ୍ଦିଷ୍ଟ ସାହିତ୍ୟର ଲକ୍ଷ୍ୟ କ'ଣ ? ନିଜେ ପ୍ରସ୍ତୁତ କରୁଥିବା ସାହିତ୍ୟ ଏହି ସବୁ ଲକ୍ଷ୍ୟ ଆମର ପରିସ୍ଥିତି ଓ ପରିବେଶକୁ ନେଇ ପରିପୂରଣ କରୁଛି କି ନାହିଁ ? ଯଦି କରୁଥାଏ ତେବେ......

୨ । ଏହି ସାହିତ୍ୟ ଶିଶୁର ଆଗ୍ରହ ଓ ରୁଚି ଅନୁସାରେ ଲିଖିତ କି ନାହିଁ ?

୩ । ଏହାର ବିଷୟବସ୍ତୁ, ଉପସ୍ଥାପନା ଓ ମୁଦ୍ରଣ ପରିପାଟୀ ଶିଶୁ ଉପଯୋଗୀ ହୋଇଛି କି ନାହିଁ ?

ଉପର୍ଯ୍ୟୁକ୍ତ କେତୋଟି ସମସ୍ୟା ପ୍ରତି ଧ୍ୟାନ ଦେଇ ପରିଚ୍ଛିନ୍ନ ହେବାର ଜ୍ଞାନ ଅତି କମ୍‌ରେ ଜଣେ ଶିଶୁ ସାହିତ୍ୟିକର ରହିବା ଆବଶ୍ୟକ ।

## ସାମ୍ପ୍ରତିକ ଓଡ଼ିଆ ଶିଶୁସାହିତ୍ୟରେ କେତେକ ଦୋଷ ଓ ତ୍ରୁଟି :

ବର୍ତ୍ତମାନର ଶିଶୁ ସାହିତ୍ୟ ଗୁଣାତ୍ମକ ଦୃଷ୍ଟିକୋଣରୁ ଯେପରି ଶିକ୍ଷକ, ଅଭିଭାବକ ଓ ଶିକ୍ଷାବିଦ୍‌ମାନଙ୍କ ଦ୍ୱାରା ଆଦୃତ ସେହିପରି ସାହିତ୍ୟ ପଦବାଚ୍ୟ ନ ହୋଇ ପ୍ରକାଶିତ କେତେକ ଶିଶୁ ସାହିତ୍ୟ ମଧ୍ୟ ଦୋଷଯୁକ୍ତ । ଶିଶୁ ସାହିତ୍ୟର ଗୁଣାତ୍ମକ ବିକାଶ ପାଇଁ କେତେକ ଶିଶୁ ସାହିତ୍ୟ ଆପ୍ରାଣ ଉଦ୍ୟମ କରୁଥିଲେ ବେଳେ ସମଗ୍ର ଶିଶୁ ସାହିତ୍ୟ ଜଗତକୁ ପରିମାଣାତ୍ମକ ଭାବେ ଦେଖା ଯାଉଥିବା ଶିଶୁ ସାହିତ୍ୟ ଶିଶୁର ମନରେ ସାହିତ୍ୟ ପ୍ରତି ବିତୃଷ୍ଣା ଜାତ କରାଏ । କେତେକଙ୍କ ମଧ୍ୟରେ ନୈରାଶ୍ୟ ସୃଷ୍ଟି କରିବା ମଧ୍ୟ ସ୍ୱାଭାବିକ । ସେହି ସବୁ ନୈରାଶ୍ୟର କାରଣ ହେଲା......

### ୧ । ଲକ୍ଷ୍ୟ ବିହୀନ ସାହିତ୍ୟ :

କେତେକ ସାହିତ୍ୟିକ କୃତି ପଢ଼ରେ କୌଣସି ଲକ୍ଷ୍ୟ ନ ଥିଲା ଭଳି ମନେ ହୁଏ । ସେହି କୃତିର ସ୍ରଷ୍ଟା ମଧ୍ୟ ତାଙ୍କର ଲକ୍ଷ୍ୟ ସଂପର୍କରେ ସୁଚିନ୍ତିତ ମତାମତ ଦେଇ ପାରି ନ ଥାନ୍ତି । ଉଦାହରଣ ସ୍ୱରୂପ ଶିଶୁ ସାହିତ୍ୟରେ ପରୀକ୍ଷା ନାମରେ ଅନେକ ଆବର୍ଜନାର ସୃଷ୍ଟି କେତେକ ପତ୍ର ପତ୍ରିକାରେ ଦେଖିବାକୁ ମିଳେ । ଯଥା :

ଅଜାଙ୍କର କଛା ଖୋଲିଗଲା, ବାଟରେ ଦୁଲ ହୋଇ ଲୁଗାପଟା ଲାଗିଗଲା, ହସନ୍ତୁ ନାହିଁ କ୍ରମରେ ଅନେକ ବୁଦ୍ଧି-ବିହୀନ ଶସ୍ତା ଧରଣର ହସ କଥା ଇତ୍ୟାଦି ଇତ୍ୟାଦି ।

### ୨ । ରୁଚିହୀନ ବିଷୟବସ୍ତୁ :

ବିଷୟବସ୍ତୁ ସାଧାରଣତଃ ଶିଶୁର ଶିକ୍ଷଣୀୟ ହେବ ନାହିଁ । ଏହା ଶିଶୁର ଅନୁଭୂତି, ବୟସ ଓ ଆଗ୍ରହକୁ ଆଖି ଆଗରେ ରଖି ସୃଷ୍ଟି କରାଯିବ । ଏହାର ପୃଷ୍ଠଭୂମିରେ ରହି ସତେ ଯେମିତି ଶିଶୁ କାମ କରୁଛି ଏହା ଜଣା ପଡ଼ିବ । ଏଥିରେ ଧର୍ମ ନିରପେକ୍ଷତା, ଜାତୀୟ ଐକ୍ୟ ଓ ଆନ୍ତର୍ଜାତୀୟ ନୀତି ଓ ନିୟମର ବିରୁଦ୍ଧାଚରଣ କରିବ ନାହିଁ । ମାତ୍ର ଓଡ଼ିଆ ଶିଶୁ ସାହିତ୍ୟରେ ଅନେକ ରୁଚିହୀନ ବିଷୟବସ୍ତୁ ଦେଖିବାକୁ ମିଳେ । ଏ ସବୁ ବିଷୟବସ୍ତୁ ଶିଶୁର ଅନୁଭୂତି ଅନୁସାରେ ହୋଇ ନ ଥିବା ଯୋଗୁଁ ସାହିତ୍ୟ ପ୍ରତି ଶିଶୁ ମନରେ ବିରକ୍ତି ଭାବ ଦେଖାଯାଏ ।

### ୩ । ମନସ୍ତତ୍ତ୍ୱବିହୀନ ସାହିତ୍ୟ :

ଶିଶୁ ସାହିତ୍ୟିକର ଶିଶୁ ମନସ୍ତତ୍ତ୍ୱରେ ଗଭୀର ପ୍ରବେଶ ରହିବା ଆବଶ୍ୟକ । ଏହାର ଅର୍ଥ ନୁହେଁ ଯେ, ଜଣେ ଶିଶୁ ସାହିତ୍ୟିକ ମନସ୍ତତ୍ତ୍ୱରେ ବିଶ୍ୱବିଦ୍ୟାଳୟ

ଡିଗ୍ରୀ ହାସଲ କରିଥିବେ । ଶିଶୁମାନଙ୍କର ଗ୍ରହଣ ଚଳନ ମାନସିକ ଓ ଶାରୀରିକ ଅଭିବୃଦ୍ଧିକୁ ଆଖି ଆଗରେ ରଖି ସାହିତ୍ୟର ବିଷୟବସ୍ତୁ ନିର୍ବାଚନ ମନସ୍ତତ୍ ଦୃଷ୍ଟିକୋଣରୁ ହେବା ଆବଶ୍ୟକ । ଅତ୍ୟଧିକ ଭୟ, ଅତ୍ୟଧିକ ମୃତ୍ୟୁ ଚେତନା, ଖାଇବାକୁ ମିଳୁନି, ଲୁହ ଝରୁଛି, ବନ୍ୟା ହେଲା, ବାତ୍ୟାହେଲା, ଲୋକମଲେ, ଆଦି ଶିଶୁ ମନସ୍ତତ୍ତ୍ୱର ପରିପନ୍ଥୀ । ସଂପ୍ରତି ଓଡ଼ିଶାରେ ବନ୍ୟାରେ ଲୋକ ମଲେ, ଶିଶୁ ଆଜି ଦୁର୍ଗା ପୂଜାରେ କାନ୍ଦୁଛି ଆଦି ଲେଖିଲେ ବନ୍ୟା କଷ୍ଟରୁ ରକ୍ଷା ପାଇଥିବା ଶିଶୁର ମନ ଅଯଥା କଷ୍ଟ ହେବ, ପୁନଶ୍ଚ ସବୁ ଶିଶୁ ତ ବନ୍ୟାର ପ୍ରତ୍ୟକ୍ଷ ଦାଉ ଭୋଗୀ ନାହାନ୍ତି । ସେମାନଙ୍କ ମନରେ ମଧ୍ୟ ପ୍ରାକୃତିକ ବିପର୍ଯ୍ୟୟ ପାଇଁ ଅହେତୁକ ଦୁଃଖ ଓ ଭୟ ଦେଖାଦେବ ।

## ୪ । ରୁଚିହୀନ ମୁଦ୍ରଣ :

କେତେକ ପତ୍ରପତ୍ରିକାର ଦୋଷ ଓ ତ୍ରୁଟି ଦେଖିଲେ ସଂପାଦନାର ଦୁର୍ବଳତା ଓ ମୁଦ୍ରଣଜନିତ ତ୍ରୁଟି ଯେ କୌଣସି ସଂବେଦନଶୀଳ ବ୍ୟକ୍ତି ମନରେ ଆଘାତ ଦେଇଥାଏ । ଗୋଟିଏ ପୃଷ୍ଠାରେ ପାଞ୍ଚ ଦଶଟିରୁ ଅଧିକ ଭୁଲଥିବା ଓ ଜଣେ ଶିକ୍ଷକଙ୍କ ଦ୍ୱାରା ସଂପାଦିତ ପତ୍ରିକା ପ୍ରାବନ୍ଧିକଙ୍କ ନଜରକୁ ଆସିଛି । ପିଲାର ମନ ଏତେ ସରଳ ଓ ତରଳ ଯେ ସେ ଯାହା ଛପା ଆକାରରେ ଦେଖିବ ତାକୁ ବେଦର ଗାର ସଦୃଶ ମାନିନେବ । ଏପରି ସଂପାଦନା ତ୍ରୁଟିଯୁକ୍ତ ଓ ମୁଦ୍ରଣ ଦୋଷଯୁକ୍ତ ପତ୍ରିକା ବାହାରିବା ନ ବାହାରିବାଠାରୁ ଶହେଗୁଣ ଭଲ ବୋଲି ଅନେକ ମନେ କରନ୍ତି ।

ଏହିସବୁ ଦୃଷ୍ଟିକୋଣରୁ ଆଜି ବେଳ ଆସିଛି ଆମକୁ ଶିଶୁ ସାହିତ୍ୟକୁ ବହୁଳଭାବେ ଶିଶୁ ଉପଯୋଗୀ କରିବାକୁ ପଡ଼ିବ । ଶିଶୁ ସାହିତ୍ୟରେ ଉପଯୁକ୍ତ ସମାଲୋଚନାମୂଳକ ପ୍ରବନ୍ଧ ଓ ଗବେଷଣାଯୁକ୍ତ ନିବନ୍ଧ ଆଦି ପ୍ରକାଶ କରିବାକୁ ପଡ଼ିବ । ଯାହା ଫଳରେ ଆଗାମୀ କେତୋଟି ଦଶନ୍ଧି ମଧ୍ୟରେ ଓଡ଼ିଆ ଶିଶୁ ସାହିତ୍ୟର ମୂଲ୍ୟାୟନ ଦୃଷ୍ଟିକୋଣରୁ ଅଧିକ ସରସ, ସୁନ୍ଦର ଓ ରୁଚିପୂର୍ଣ୍ଣ ସାହିତ୍ୟରୂପେ ଆମ ଶିଶୁର ବିଭିନ୍ନ ସାହିତ୍ୟିକ ଆବଶ୍ୟକତାକୁ ପରିପୂରଣ କରିପାରିବ ।



# ଶିଶୁସାହିତ୍ୟ ଏକାଡେ଼ମୀ

ଡଃ ନରେନ୍ଦ୍ର ପ୍ରସାଦ ଦାସ
ସାଧାରଣ ସଂପାଦକ

ଏକରୁ ଅନେକ, ବ୍ୟଷ୍ଟିରୁ ସମଷ୍ଟି—ଏହାକୁ ଭିତ୍ତିକରି ବ୍ୟକ୍ତିଗତ ଆଶା ଓ ହତାଶା ଭିତରେ ଶିଶୁସାହିତ୍ୟ ଏକାଡେମୀର ଜନ୍ମ । ତେଣୁ ଏକାଡେମୀ ସମ୍ବନ୍ଧରେ ଏକ ସାର୍ବଜନୀନ ବିବରଣୀ ଦେଲାବେଳେ ବ୍ୟକ୍ତିକେନ୍ଦ୍ରିକ ଅଭିମତ ସ୍ଥାନେ ସ୍ଥାନେ ପ୍ରକାଶିତ ହେବା ଅସ୍ୱାଭାବିକ ନୁହେଁ । ଏଣୁ ପ୍ରଥମରୁ ସମ୍ଭ୍ରମର ସହ କ୍ଷମା ମାଗିନେଉଛି ।

## ଏକାଡେ଼ମୀ ଗଠନର ପୃଷ୍ଠଭୂମି :

ସବୁ ସ୍ତରର ଶିକ୍ଷାଦାନ ମାତୃଭାଷା ମାଧ୍ୟମରେ ହେବା ଉଚିତ ବୋଲି ମୁଁ ସବୁ ସମୟରେ କହିଆସିଛି । କିନ୍ତୁ ୧୯୮୪ ମସିହାରୁ ନିଜ ପିଲାକୁ ଓଡ଼ିଆ ସ୍କୁଲରେ ପଢ଼ାଇବା ସପକ୍ଷରେ ଯୁକ୍ତି କରି ବିଭିନ୍ନ ସମୟରେ ମତେ ନାନା ପ୍ରଶ୍ନବାଣର ସମ୍ମୁଖୀନ ହେବାକୁ ପଡ଼ିଛି । ଓଡ଼ିଆ ଭାଷାରେ ପିଲାଙ୍କ ପାଇଁ ଉପଯୁକ୍ତ ବହି ନ ଥିବାରୁ ଅନ୍ତତଃ ନିଜ ପିଲାକୁ ଓଡ଼ିଆରେ ନ ପଢ଼ାଇବା ଉଚିତ ବୋଲି ଅନେକଙ୍କର ଯୁକ୍ତି । ସେହିଦିନୁ ଆମ ପିଲାଙ୍କ ପାଇଁ ଆମ ଭାଷାରେ ଇଂରାଜୀ ଭାଷା ପରି ବହି ଲେଖିବାକୁ ସ୍ଥିରକରି ପିଲାଙ୍କ ପାଇଁ ନାନା ଜାତିର ଲେଖା ଓ ପିଲାମାନଙ୍କର ଅଭିଭାବକଙ୍କ ପାଇଁ ଇଂରାଜୀ ଓ ଓଡ଼ିଆରେ ପ୍ରବନ୍ଧ ଲେଖିଛି— କିଛିଟା ସ୍ୱୀକୃତି ମଧ୍ୟ ଏଥିପାଇଁ ମିଳିଛି । ମାତ୍ର ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ରଠାରୁ ଦୂରରେ ଥାଇ କିଛି ଆଖି-ଦୃଶିଆ କାମ କରିପାରି ନ ଥିଲି ।

୧୯୮୦ ମସିହା ଏପ୍ରିଲ ମାସରେ ବ୍ରହ୍ମପୁରଠାରେ ଓଡ଼ିଶା ସରକାରଙ୍କ ଶିଶୁସାହିତ୍ୟ କମିଟି ଆନୁକୂଲ୍ୟରେ ଆୟୋଜିତ ଏକ ଆଲୋଚନାଚକ୍ରରେ ବକ୍ତେ ପଣି ଭାଗ ନେଇଥିଲି—ସେଠାରେ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ସହ ପରିଚୟ ହେଲା । ଶିଶୁସାହିତ୍ୟ କ୍ଷେତ୍ରରେ ଡକ୍ଟର ମହାନ୍ତି ସେତେବେଳକୁ ମଧ୍ୟ ଲବ୍ଧପ୍ରତିଷ୍ଠ ହୋଇ ସାରିଥିଲେ । ତାଙ୍କୁ ଶିଶୁସାହିତ୍ୟ ନେଇ ନିଜର କ୍ଷୋଭ କହି ଗୋଟିଏ ଏକାଡେମୀ ଗଢ଼ିବାର ପ୍ରସ୍ତାବ ଦେଲି । ତାଙ୍କର ଅକୁଣ୍ଠ ଉତ୍ସାହ, ସହାୟତା ଓ ପରାମର୍ଶରେ ୧୯୮୦ ଅକ୍ଟୋବର ମାସରେ ଶିଶୁସାହିତ୍ୟ ଏକାଡେ଼ମୀର ସମ୍ବିଧାନ ପ୍ରଣୟନ କରାଗଲା । ଶିଶୁସାହିତ୍ୟିକମାନଙ୍କୁ ସମ୍ବିଧାନ ପଠାଇ ସେମାନଙ୍କଠାରୁ ଉତ୍ସାହପ୍ରଦ ଉତ୍ତର ପାଇଲା ବେଳକୁ 'ଉତ୍କଳ ଶିଶୁସାହିତ୍ୟ ସମିତି' ଗଠିତ ହୋଇ ସାରିଥିଲା କଟକରେ ।

କଟକ ଯାଇ ଉତ୍କଳ ଶିଶୁସାହିତ୍ୟ ସମିତିର ଉଦ୍ୟୋକ୍ତା ବନ୍ଧୁମାନଙ୍କୁ ଆମ ଦ୍ୱାରା ପ୍ରଣୀତ ସମ୍ବିଧାନ ଦେଇ କିଛି ବାସ୍ତବ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ପରାମର୍ଶ ଦେଲି । ସେମାନେ ଏଭଳି ଉଦ୍ୟମରେ ମୋର ଆନ୍ତରିକତାକୁ ପରଖିବା ନିମନ୍ତେ ମତେ ଏକ ନବଗଠିତ କାର୍ଯ୍ୟନିର୍ବାହୀ ସମିତିରେ ଉପସଭାପତି ଭାବରେ ରହିବାକୁ ଅନୁରୋଧ କଲେ । ୧୯୮୧ ମସିହାରେ ଓଡ଼ିଶା ବାହାରେ ରହିବାର ସମ୍ଭାବନା ଥିବାରୁ ମୁଁ ଏଥିପାଇଁ ନିଜର ଅକ୍ଷମତା ପ୍ରକାଶ କଲେ ବି ସେମାନଙ୍କ ବିଚାର ଦେଖି ଉପସଭାପତି ଭାବରେ ରହିବାକୁ ସମ୍ମତ ହେଲି । ଶ୍ରୀଯୁକ୍ତ ରାମକୃଷ୍ଣ ନନ୍ଦଙ୍କୁ ଅନୁପସ୍ଥିତିରେ ଏହି ସମିତିର ସଭାପତି ଭାବରେ ଏବଂ ଅଧ୍ୟାପକ ମହେଶ୍ୱର ମହାନ୍ତିଙ୍କୁ ମଧ୍ୟ ଅନୁପସ୍ଥିତିରେ ଅନ୍ୟତମ ଉପସଭାପତି ଭାବରେ ଗ୍ରହଣ କରାଯାଇଥିଲା । ଉଦ୍ୟୋକ୍ତା ବନ୍ଧୁମାନଙ୍କର ନାନା ପ୍ରତିଶ୍ରୁତି ଧରି ୧୯୮୧ ମାର୍ଚ୍ଚରେ ମୁଁ ଶାନ୍ତିନିକେତନ ଚାଲିଗଲି । ସେଠାରୁ ଚିଠି ଲେଖି ମଧ୍ୟ ଏହି ସମିତି ସମ୍ବନ୍ଧରେ କିଛି ବାର୍ତ୍ତା ପାଇଲି ନାହିଁ ।

## ଏକାଡ଼େମୀ ଗଠନ :

୧୯୮୧ ଅକ୍ଟୋବରରେ ଓଡ଼ିଶା ଫେରିଆସି ଭୁବନେଶ୍ୱରଠାରେ ଉତ୍କଳ ଶିଶୁସାହିତ୍ୟ ସମିତିର ଏକ ବୈଠକରେ ଯୋଗଦେଲି ପରେ ହତାଶାଜର୍ଜରିତ ହୋଇ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ସହିତ ପୁଣି ଏକାଡେମୀ ଗଠନ ନେଇ ଆଲୋଚନା କଲି । ଦୁହେଁ ୧୯୮୨ ଜାନୁଆରୀ ୧୦ ତାରିଖ ଦିନ ଭୁବନେଶ୍ୱରସ୍ଥ କଳାମଣ୍ଡପଠାରେ "କୁନିରଇଜ" ଦ୍ୱାରା ଆୟୋଜିତ ଶିଶୁସାହିତ୍ୟ ସମ୍ମିଳନୀରେ ଏକାଡ଼େମୀ ସମ୍ବନ୍ଧରେ ସୂଚନା ଦେଲୁ । ଉପସ୍ଥିତ ଶିଶୁସାହିତ୍ୟିକମାନଙ୍କର ଅପୂର୍ବ ଉତ୍ସାହ ଦେଖି ୧୯୮୨ ଫେବୃଆରୀ ୭ ତାରିଖ ଦିନ ଭୁବନେଶ୍ୱରଠାରେ "ବାରମଜା", "କୁନିରଇଜ" ଓ "ଟିକିଫୁଲ" ଦ୍ୱାରା ଆୟୋଜିତ ସମ୍ମିଳନୀରେ ମାତ୍ର ୨୩ ଜଣ ଶିଶୁସାହିତ୍ୟିକଙ୍କ ଗହଣରେ ଶିଶୁସାହିତ୍ୟ ଏକାଡ଼େମୀ (Childern's Literature Academy), ଓଡ଼ିଶା, ଆନୁଷ୍ଠାନିକ ଭାବେ ଗଠିତ ହେଲା । ଏହି ସମ୍ମିଳନୀରେ ପ୍ରଥମ ସାଧାରଣ ପରିଷଦ ବୈଠକ ପର୍ଯ୍ୟନ୍ତ କାମ ଚଳାଇଯିବା ପାଇଁ ଶ୍ରୀଯୁକ୍ତ ରାମକୃଷ୍ଣ ନନ୍ଦଙ୍କର ସଭାପତିତ୍ୱରେ ଏକ ଅସ୍ଥାୟୀ କାର୍ଯ୍ୟନିର୍ବାହୀ ସମିତି ଗଠନ କରାଗଲା । ଏଥିରେ ଶ୍ରୀଯୁକ୍ତ ବାମନଚରଣ ମିଶ୍ର, ଡକ୍ଟର ଜଗନ୍ନାଥ ମହାନ୍ତି ଉପସଭାପତି ରହିଲେ । ନିଜର ବ୍ୟକ୍ତିଗତ ଅସୁବିଧା ଦୃଷ୍ଟିରୁ ଅତ୍ୟନ୍ତ ଅନିଚ୍ଛାସତ୍ତ୍ୱେ ଏକାଡେମୀ ମୋର ବୌଦ୍ଧିକ ସନ୍ତାନ ହୋଇଥିବାରୁ ମୋତେ ବାଧ୍ୟକରି ସାଧାରଣ ସମ୍ପାଦକ ରଖାଗଲା । ଶ୍ରୀଯୁକ୍ତ ଜୟକୃଷ୍ଣ ସାହୁ, ଉପେନ୍ଦ୍ରକୁମାର ଜେନା ଓ ଶେଖ୍ ତାଜୁଦ୍ଦିନ ଅହମ୍ମଦଙ୍କୁ ସମ୍ପାଦକ ଏବଂ ସର୍ବଶ୍ରୀ ମହେଶ୍ୱର ମହାନ୍ତି, ନିକୁଞ୍ଜକିଶୋର କାନୁନଗୋ, ବୀରେନ୍ଦ୍ର କୁମାର ସାମନ୍ତରାୟ, ଦେବରାଜ ସାମନ୍ତରାୟ, ରଜନୀରଞ୍ଜନ ଦାଶ, ବିଧୁଭୂଷଣ ପଟ୍ଟନାୟକ, ରମେଶଚନ୍ଦ୍ର ଭଞ୍ଜ, ବସନ୍ତ କୁମାର ପାଲ୍ ଓ ଶ୍ରୀମତୀ ସାବିତ୍ରୀ ସାହୁ ସଭ୍ୟ ରହିଲେ । କିନ୍ତୁ ପରେ ସାଧାରଣ ପରିଷଦ ବୈଠକ ଠିକ୍ ସମୟରେ ଅନୁଷ୍ଠିତ ନ ହୋଇ ପାରିବାରୁ ଏବଂ "ସଂସାର" ପତ୍ରିକାର ପୁନଃପ୍ରକାଶନ ଜନିତ କର୍ମବ୍ୟସ୍ତତାଯୋଗୁଁ ଶ୍ରୀ ରାମକୃଷ୍ଣ ନନ୍ଦ ସଭାପତି ପଦରୁ ଇସ୍ତଫା ଦେଇଛନ୍ତି । ଶ୍ରୀଯୁକ୍ତ ଉପେନ୍ଦ୍ର କୁମାର ଜେନା ମଧ୍ୟ ବ୍ୟକ୍ତିଗତ କାରଣରୁ ନିଜ ପଦରୁ ଇସ୍ତଫା ଦେଇଛନ୍ତି । କାର୍ଯ୍ୟନିର୍ବାହୀ ସମିତିର ୧୭ । ୪ । ୮୩ ଦିନ ଅନୁଷ୍ଠିତ ବୈଠକରେ ଏହି ଇସ୍ତଫା ଗୃହୀତ ହୋଇ ସାଧାରଣ ପରିଷଦ ବୈଠକ ପର୍ଯ୍ୟନ୍ତ ଉପସଭାପତି ଶ୍ରୀଯୁକ୍ତ ବାମନଚରଣ ମିଶ୍ର ସଭାପତିଙ୍କ ଦାୟିତ୍ୱ ବହନ କରିବେ ବୋଲି ସ୍ଥିର କରାଗଲା ଏବଂ ଉପେନ୍ଦ୍ରକୁମାର ଜେନାଙ୍କ ସ୍ଥାନରେ ଶ୍ରୀଯୁକ୍ତ ବଙ୍କିମଚନ୍ଦ୍ର ନାୟକଙ୍କୁ ଗ୍ରହଣ କରାଗଲା ।

## ଏକାଡ଼େମୀ ସଙ୍ଗଠନ :

୧୯୮୨ ଫେବୃଆରୀ ୭ ତାରିଖ ଦିନ ଆନୁଷ୍ଠାନିକଭାବେ ଏକାଡ଼େମୀ ଗଠିତ ହୋଇଗଲାପରେ ଏହାର ବାସ୍ତବ ସଙ୍ଗଠନ ପାଇଁ ନାନା ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଛି । ସରକାରୀ ସାହାଯ୍ୟରେ ଶିଶୁ ପତ୍ରପତ୍ରିକାର ଅଭାବ ଅସୁବିଧା ଦୂରକରିବା ପାଇଁ ଏକାଡେମୀକୁ ନିୟୋଜିତ କରିବାକୁ କେତେକ ବନ୍ଧୁ ଆରମ୍ଭରେ ଚାହିଁଥିଲେ । କାର୍ଯ୍ୟନିର୍ବାହୀ ସମିତିରେ ଅଧିକାଂଶ ସଭ୍ୟ ଏପ୍ରକାର ଇଚ୍ଛାକୁ ବିରୋଧ କରିବାରେ କେତେକ ବନ୍ଧୁଙ୍କଠାରୁ ପୂର୍ବ ପ୍ରତିଶ୍ରୁତ ସାହାଯ୍ୟ ସହଯୋଗ ଆଉ ମିଳି ନାହିଁ । ରାଜ୍ୟର ଶିଶୁ ସାହିତ୍ୟିକ ଏବଂ ସଭ୍ୟମାନଙ୍କର ପ୍ରତ୍ୟୟ ଆଣିବା ପାଇଁ ପ୍ରଥମରୁ ଏକାଡେମୀର ରେଜିଷ୍ଟ୍ରୀକରଣ ନିମନ୍ତେ ସମସ୍ତେ ଗୁରୁତ୍ୱ ଦେଲେ । ବହୁ ଅନୁଷ୍ଠାନକୁ ପ୍ରଚଳିତ ରୀତିଯୋଗୁଁ ରେଜିଷ୍ଟ୍ରେସନ ପାଇଁ ମାସାଧିକ କାଳ ଦୌଡ଼ିବାକୁ ପଡ଼େ ବୋଲି ଜାଣିସୁଦ୍ଧା ବ୍ୟକ୍ତିଗତ ପ୍ରଚେଷ୍ଟାରେ ଏହିକାର୍ଯ୍ୟ ମାତ୍ର ଗୋଟିଏ ଦିନରେ ଶେଷକଲୁ । ଅବଶ୍ୟ ଏଥିପାଇଁ ସାରା ଦିନଟି ଅକ୍ଳାନ୍ତ ଧାଁ ଦଉଡ଼ କରିବାରେ କଟିଗଲା, ଖାଇବାକୁ ମଧ୍ୟ ସମୟ କରି ହେଲନାହିଁ । ୧୯୮୨ ଏପ୍ରିଲ ୩୦ ତାରିଖଦିନ ଏହି ରେଜିଷ୍ଟ୍ରେସନ କାର୍ଯ୍ୟରେ ଡକ୍ଟର ଜଗନ୍ନାଥ ମହାନ୍ତି, ଆଡ଼ଭୋକେଟ ବଙ୍କିମ ଚନ୍ଦ୍ର ନାୟକ ଓ ଅଧ୍ୟାପକ ରଜନୀରଞ୍ଜନ ଦାଶଙ୍କ ସାହାଯ୍ୟ ସହଯୋଗ ସ୍ୱୀକାର୍ଯ୍ୟ ।

ଏକାଡ଼େମୀର ସଭ୍ୟ ସଂଗ୍ରହ ଖବରକାଗଜ ବିଜ୍ଞପ୍ତିରୁ ଯେତିକି ହୋଇଛି ତାହା ଆମକୁ ଅଭିଭୂତ କରିଅଛି ।

ତଥାପି ଶ୍ରୀଯୁକ୍ତ ବାମନଚରଣ ମିଶ୍ର, ଜୟକୃଷ୍ଣ ସାହୁ, ରାମକୃଷ୍ଣ ନନ୍ଦ, ନିକୁଞ୍ଜକିଶୋର କାନୁନ୍‌ଗୋ, ଦେବରାଜ ସାମନ୍ତରାୟ, ଚକ୍ରଧର ବେହେରା ପ୍ରଭୃତି କେତେକ ଶୁଭେଚ୍ଛୁଙ୍କର ବ୍ୟକ୍ତିଗତ ଉଦ୍ୟମ ଯୋଗୁଁ କେତେକ ଶିଶୁସାହିତ୍ୟିକ ଓ ସାହିତ୍ୟପ୍ରେମୀ ଏହି ଏକାଡ଼େମୀର ସଭ୍ୟ ହୋଇଛନ୍ତି । ଆନୁଷ୍ଠାନିକ ସଭ୍ୟ ସଂଗ୍ରହ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କର ଉଦ୍ୟମ ବିନା ସମ୍ଭବ ହୋଇ ନ ଥାନ୍ତା । ବର୍ତ୍ତମାନ ଏକାଡ଼େମୀର ମୋଟ ୧୮୮ ସଭ୍ୟଙ୍କ ମଧ୍ୟରୁ ଆଜୀବନ ସଭ୍ୟ ୧୯ ଜଣ । ଏହି ଆଜୀବନ ସଭ୍ୟଙ୍କ ମଧ୍ୟରେ ୩ ଜଣ ଆନୁଷ୍ଠାନିକ ସଭ୍ୟ ଅନ୍ତର୍ଭୁକ୍ତ ।

ସଭ୍ୟ ସଂଗ୍ରହ ଓ ରେଜିଷ୍ଟ୍ରୀକରଣ ପରି ସାଂଗଠନିକ କାର୍ଯ୍ୟ ପ୍ରଶଂସନୀୟ ହେଲେ ସୁଦ୍ଧା ଅଦ୍ୟାବଧି ଏକାଡ଼େମୀ କିଛି ସମ୍ମାନଜନକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ହାସଲ କରି ପାରି ନାହିଁ । ତେଣୁ ଅନେକ ସଭ୍ୟଙ୍କ ମନରେ ନାନା ସଂଶୟ ଓ କ୍ଷୋଭ ମଧ୍ୟ ରହିଅଛି । ୧୯୮୨ ଜୁନ୍ ମାସ ଭିତରେ ଏକାଡ଼େମୀର ସାଧାରଣ ପରିଷଦ ଡକାଇ ସ୍ଥାୟୀ କାର୍ଯ୍ୟନିର୍ବାହୀ ସମିତି ଗଠନ କରିଦେଲେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରିବା ସହଜ ହେବ ବୋଲି କେତେକ ମତ ଦେବାରେ ଜୁନ୍ ୨୦ ତାରିଖ ଦିନ ସାଧାରଣ ପରିଷଦ ବୈଠକ ଡକାଇବା ସ୍ଥିର କରାଯାଇ ଆନୁସଙ୍ଗିକ କାର୍ଯ୍ୟ ଆରମ୍ଭ କରାଗଲା । ଏଥିପାଇଁ ୨।୫।୮୨ ଦିନ କଟକ ଶ୍ରୀ ରାମଚନ୍ଦ୍ର ଭବନରେ ଏକ ସଭାର ଆୟୋଜନ କରାଯାଇଥିଲା । କାର୍ଯ୍ୟନିର୍ବାହୀ ସମିତି ସାଙ୍ଗକୁ ଏକ ସାଧାରଣ ପରିଷଦ ପ୍ରସ୍ତୁତି କମିଟି ମଧ୍ୟ ଏହି ସଭାରେ ଗଠିତ ହୋଇଥିଲା । ଏହି ପ୍ରସ୍ତୁତି କମିଟିରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ସଭ୍ୟ ରଖା ଯାଇଥିଲା ।

ଏହା ପରେ ୯।୫।୮୨ ଦିନ ପ୍ରସ୍ତୁତି କମିଟିର ଏକ ବୈଠକରେ ୬ଟି ସବ୍‌କମିଟି ଗଠିତ ହେଲା । ୯।୫ର ଏହି ବୈଠକକୁ କିନ୍ତୁ ପ୍ରସ୍ତୁତି କମିଟିର ଅଧିକାଂଶ ସଭ୍ୟ ଆସି ପାରି ନ ଥିଲେ । ପରେ ୧୩।୬।୮୨ ଦିନ ଅନୁଷ୍ଠିତ କାର୍ଯ୍ୟନିର୍ବାହୀ ସମିତିର ବୈଠକରେ ରାଜ୍ୟରେ ସେତେବେଳେ ଦେଖା ଯାଇଥିବା ଅଭୂତପୂର୍ବ ବାତ୍ୟା ଓ ମରୁଡ଼ିଜନିତ ପରିସ୍ଥିତି ପାଇଁ ସାଧାରଣ ପରିଷଦ ବୈଠକ ଜୁନରୁ ଅକ୍ଟୋବରକୁ ଘୁଞ୍ଚାଇ ଦିଆଗଲା । ଏହା ପରେ ପ୍ରଳୟଙ୍କରୀ ବନ୍ୟା ଯୋଗୁଁ ୧୬।୧୦।୮୨ ଦିନ କାର୍ଯ୍ୟନିର୍ବାହୀ ସମିତି ପୁଣି ଥରେ ସାଧାରଣ ପରିଷଦ ବୈଠକର ଦିନ ୧୯୮୨ ନଭେମ୍ବର ବା ଡ଼ିସେମ୍ବରକୁ ଘୁଞ୍ଚାଇଦେଲେ । ଶେଷରେ ୧୬।୪।୮୩ ଦିନର ବୈଠକରେ ସାମ୍ବିଧାନିକ ବ୍ୟବସ୍ଥା ଦୃଷ୍ଟିରୁ ଜୁନ୍ ମାସରେ ସାଧାରଣ ପରିଷଦ ବୈଠକ ଆୟୋଜନ କରିବାକୁ କାର୍ଯ୍ୟନିର୍ବାହୀ ସମିତି ସ୍ଥିରକଲେ ।

ସାଧାରଣ ପରିଷଦ ବୈଠକ ଡକାଇବାରେ ଏ ଯେଉଁ ବର୍ଷକର ବିଳମ୍ବ ଘଟିଲା ସେଥିପାଇଁ ଯେତେ ଯୁକ୍ତିଯୁକ୍ତ କୈଫିୟତ ଦେଲେ ବି ନିଜର ମନ ମାନୁନାହିଁ । କାରଣ ଏ ସବୁ କାରଣ ସାଙ୍ଗକୁ ଅନ୍ୟ ଏକ ବଳିଷ୍ଠ କାରଣ ରହିଛି—ତାହା ନିଷ୍ଠା ଓ ଆନ୍ତରିକତାର ଅଭାବ । ସାମୂହିକ କାର୍ଯ୍ୟ ପାଇଁ ଆବଶ୍ୟକ ତ୍ୟାଗ । ନିଷ୍ଠାର ଅଭାବ ଆମ ସମାଜର ପ୍ରତ୍ୟେକ ସ୍ତରରେ ପ୍ରତିଫଳିତ ହେଉଥିବେଳେ ଶିଶୁସାହିତ୍ୟ ଏକାଡ଼େମୀ କ୍ଷେତ୍ରରେ ମଧ୍ୟ ତାହାର ବିଚ୍ୟୁତି ନ ହେବା ଆଶ୍ଚର୍ଯ୍ୟଜନକ ନୁହେଁ । ସମାଜର ବିଭିନ୍ନ ଶ୍ରେଣୀର ଲୋକେ ବିଭିନ୍ନ ସ୍ତରରେ ଶିଶୁସାହିତ୍ୟ ଏକାଡ଼େମୀ ଭଳି ସଙ୍ଗଠନର ଆଭିମୁଖ୍ୟ ଦେଖି ଶୁଣି ଆମକୁ ବହୁତ ଉତ୍ସାହ ଦେଇଛନ୍ତି—କିନ୍ତୁ କେବଳ କଥାରେ । କେତେକ ସ୍ଥାନରେ ଭଲ କଥା ପଦିଏ ବି ଶୁଣିବାକୁ ମିଳିନି । ଏ ପ୍ରକାର ତିକ୍ତ ଅନୁଭୂତି ଅତ୍ୟନ୍ତ ବାଧିଥିଲେ ବି ଏ ସବୁକୁ ଏଠାରେ ଏକାଡ଼େମୀର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ପ୍ରକାଶ କରିବା ସମୀଚୀନ ମନେ କରୁନାହିଁ । କିନ୍ତୁ ଏକାଡ଼େମୀର ମହତ ଆଭିମୁଖ୍ୟ ଓ ଆବଶ୍ୟକତା ସମ୍ବନ୍ଧରେ କାହାରି ଦ୍ୱିମତ ନ ଥିବାର ପ୍ରତ୍ୟୟ ଆସିଛି ।

ସାଧାରଣ ପରିଷଦ ବୈଠକ ପାଇଁ ଅର୍ଥର ଅଭାବ ସବୁଠାରୁ ବଡ଼ ଅନ୍ତରାୟ ହୋଇଛି । ଶେଷରେ ବ୍ୟକ୍ତିଗତ ଉଦ୍ୟମରେ ବିଭିନ୍ନ ସଭ୍ୟଙ୍କର ଦାନ ଓ ସାଧାରଣ ଲୋକଙ୍କର ସହାୟତାରେ ସାଧାରଣ ପରିଷଦ ଆୟୋଜନ କରିବାକୁ ସ୍ଥିରକରି କାର୍ଯ୍ୟନିର୍ବାହୀସମିତିର କେତେକ

ସଭ୍ୟଙ୍କ ସହ ଦୁଆର ଦୁଆର ବୁଲିବୁଲି ସମ୍ମାନଜନକ ଭାବରେ ଏହି ସାଧାରଣ ଅଧିବେଶନ ଅନୁଷ୍ଠିତ କରାଇବା ନିମନ୍ତେ ଏକ ଶେଷଚେଷ୍ଟା କରିବାକୁ ସ୍ଥିର କଲୁ । ଏହି ସିଦ୍ଧାନ୍ତ ଅନୁସାରେ ଭୁବନେଶ୍ୱରର ଅନୁବିଭାଗୀୟ ଅଧିକାରୀ (ଏସ୍. ଡ଼ି. ଓ) ସାହିତ୍ୟିକ ଶ୍ରୀଯୁକ୍ତ ସୁଧାଂଶୁ ମୋହନ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଏକ ଅଭ୍ୟର୍ଥନା ସମିତି ଗଠନ କଲୁ । ୨୨ । ୫ । ୮୩ ଦିନ ଅଭ୍ୟର୍ଥନା ସମିତିର ପ୍ରଥମ ବୈଠକକୁ ଅଧ୍ୟକ୍ଷ ମହାଶୟ ଏବଂ ସଭ୍ୟମାନଙ୍କ ମଧ୍ୟରୁ କେବଳ ଶ୍ରୀଯୁକ୍ତ ହରିହର ପଣ୍ଡା ଆସିଥିଲେ । ଯାହାହେଉ ଶ୍ରୀଯୁକ୍ତ ପଣ୍ଡାଙ୍କର ସହଯୋଗ ଓ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ସାହାଯ୍ୟ, ସହଯୋଗରେ ଆଜିର ଏହି ଆୟୋଜନ ।

## ଏକାଡ଼େମୀର ଆବଶ୍ୟକତା, ଆଭିମୁଖ୍ୟ ଓ କାର୍ଯ୍ୟକ୍ରମ :

ଶିଶୁସାହିତ୍ୟକୁ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଦେବାପାଇଁ ଶିଶୁସାହିତ୍ୟିକମାନଙ୍କୁ ସୁସଂଗଠିତ କରିବା ଏକାନ୍ତ ଆବଶ୍ୟକ । ଏହି ମହାନ୍ ଦାୟିତ୍ୱ ସୁସ୍ଥରୂପେ ନିର୍ବାହ କରିବା ପାଇଁ ଶିଶୁସାହିତ୍ୟ ଏକାଡ଼େମୀ ଏକ ପ୍ରକୃଷ୍ଟ ଅନୁଷ୍ଠାନ । ଶିଶୁସାହିତ୍ୟିକମାନଙ୍କୁ ଏକାଠି କରି ପରସ୍ପର ମଧ୍ୟରେ ଭାବର ଆଦାନ ପ୍ରଦାନ କରାଇବା, ଶିଶୁମାନଙ୍କର ଯୁଗଚେତନାନୁସାରିଣୀ ଆବଶ୍ୟକତାକୁ ଆଖିରେ ରଖି ଶିଶୁସାହିତ୍ୟ ରଚନା ସମ୍ବନ୍ଧୀୟ ତାତ୍ତ୍ୱିକ ଆଲୋଚନା ଓ ସମୀକ୍ଷା ପାଇଁ ସେମିନାର (ପାଠଚକ୍ର), ବିଭିନ୍ନ କର୍ମଶାଳା ପ୍ରଭୃତି ଆୟୋଜନ କରିବା, ଶିଶୁସାହିତ୍ୟିକ ଓ ଏଭଳି ସାହିତ୍ୟ ପ୍ରକାଶକମାନଙ୍କ ମଧ୍ୟରେ ସମନ୍ୱୟ ଓ ଉତ୍ତମ ବୁଝାମଣା ସୃଷ୍ଟି କରିବା ଏହି ଏକାଡେମୀର ଲକ୍ଷ୍ୟ । ଉପାଦେୟ ପ୍ରକାଶନ କାର୍ଯ୍ୟ ହାତକୁ ନେବା ଏବଂ ଉତ୍କୃଷ୍ଟ ଶିଶୁସାହିତ୍ୟ ସୃଷ୍ଟିପାଇଁ ସାହିତ୍ୟିକମାନଙ୍କ ମଧ୍ୟରେ ଉତ୍ସାହ ସୃଷ୍ଟି ନିମନ୍ତେ ଯଥାର୍ଥ ସ୍ୱୀକୃତି (ପୁରସ୍କାର) ପ୍ରଦାନ କରିବା ମଧ୍ୟ ଏହାର ଅନ୍ୟତମ ଲକ୍ଷ୍ୟ । ଏହି ଲକ୍ଷ୍ୟଗୁଡ଼ିକୁ ହାସଲ କରିବା ପାଇଁ ଯାବତୀୟ ଆନୁସଙ୍ଗିକ କାର୍ଯ୍ୟକ୍ରମ ହାତକୁ ନେବା ଏକାଡେମୀ ଚାହେଁ ।

ଉପର୍ଯ୍ୟୁକ୍ତ ଲକ୍ଷ୍ୟଗୁଡ଼ିକୁ ଆଖିରେ ରଖି ଏକ ବୟସାନୁସାରିଣୀ ଶବ୍ଦମାଳା (Graded Vocabulary) ରଚନା, ଶିଶୁଙ୍କ ପାଇଁ ଏକ ସଚିତ୍ର ଅଭିଧାନ ପ୍ରଣୟନ ଏବଂ ଶିଶୁସାହିତ୍ୟିକ, ପିତାମାତା ଓ ଶିଶୁଙ୍କ ପାଇଁ ଏକ ଉପାଦେୟ ପତ୍ରିକା ପ୍ରକାଶନ କରିବା ପାଇଁ ଶିଶୁସାହିତ୍ୟ ଏକାଡେମୀ ନୀତିଗତ ସିଦ୍ଧାନ୍ତ ଗ୍ରହଣ କରିଛି । ଏହାଛଡ଼ା ପ୍ରତିବର୍ଷ ଅନ୍ତତଃ ଦଶଖଣ୍ଡ ଶିଶୁସାହିତ୍ୟ ପ୍ରକାଶ କରିବାର ଲକ୍ଷ୍ୟ ରହିଛି । ଏଭଳି କିଛି ଉପାଦେୟ କାମ କଲାପରେ ସରକାରୀ ଓ/ବା ଅନ୍ୟାନ୍ୟ ବେସରକାରୀ ଆନୁଷ୍ଠାନିକ ପୃଷ୍ଠପୋଷକତା ପାଇଁ ଏକାଡ଼େମୀ ଉଦ୍ୟମ କରିପାରେ । ଏ ପ୍ରକାର କାର୍ଯ୍ୟସାଧନ ପାଇଁ ଯଥେଷ୍ଟ ଅର୍ଥର ଆବଶ୍ୟକତା ଥିବା ଦୃଷ୍ଟିରୁ ଅନ୍ତତଃ ଏକଲକ୍ଷ ଟଙ୍କାର ଏକ ସ୍ଥାୟୀ ଗଚ୍ଛିତ ପାଣ୍ଠି ସୃଷ୍ଟି କରିବା ନିମନ୍ତେ ସ୍ଥିର କରାଯାଇଅଛି । ମାତ୍ର ଏ ଦିଗରେ କିଛି ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆଯାଇ ପାରିନାହିଁ । ସଭ୍ୟଚାନ୍ଦା ଓ ସାଧାରଣରୁ ସଂଗୃହୀତ ଅର୍ଥ ଓ ତାହାର ହିସାବ ଅନ୍ୟତ୍ର ଦିଆ ଯାଉଅଛି ।

ଏକାଡେମୀର ସକଳ ଲକ୍ଷ୍ୟ ଓ କାର୍ଯ୍ୟକ୍ରମ ହୃଦୟଗ୍ରାହୀ ହେଲେହେଁ, ସେସବୁର ସଫଳ ରୂପାୟନ ପାଇଁ ଆବଶ୍ୟକ ହେଉଥିବା ତ୍ୟାଗ, ନିଷ୍ଠାପର ସେବାରୁ ଏକାଡେମୀ ଅଦ୍ୟାବଧି ବଞ୍ଚିତ ହୋଇଅଛି । ତଥାପି ଆଜିର ସମାବେଶ ମନରେ ପୁଣି ଉତ୍ସାହ ଭରି ଦେଉଅଛି । ଆଶା, ଏଠାରେ ଯେଉଁ ନୂତନ କର୍ମକର୍ତ୍ତାମାନେ ଏକାଡେମୀର ଦାୟିତ୍ୱ ଗ୍ରହଣ କରିବେ, ସେମାନେ ଏହିସବୁ କାର୍ଯ୍ୟକ୍ରମ ସାଙ୍ଗକୁ ଆହୁରି ଅନେକ ଉପାଦେୟ କାର୍ଯ୍ୟକ୍ରମ ହାତକୁ ନେବେ ଏବଂ ସଫଳତାର ସହ ଏକାଡେମୀକୁ ଶିଶୁ ସାହିତ୍ୟ କ୍ଷେତ୍ରରେ, ଶିଶୁ ସାହିତ୍ୟିକ, ଶିଶୁ ତଥା ସେମାନଙ୍କର ଅଭିଭାବକମାନଙ୍କ ମଧ୍ୟରେ ଏକ ଉଜ୍ଜ୍ୱଳ ଆଲୋକ ବର୍ତ୍ତିକା କରି ଠିଆ କରାଇବେ । ଆଜିର ଶୁଭ ଅବସରରେ ଏତିକି କାମନାକରି ରହୁଛି । ଇତି ।

ଜ ୟ ହି ନ୍ଦ୍

# ସଭ୍ୟ ପରିଚୟ ସୂଚୀ

ଶିଶୁସାହିତ୍ୟ ଏକାଡ଼େମୀ, ଓଡ଼ିଶାର ସମ୍ବିଧାନ ଅନୁସାରେ ଦୁଇ ଶ୍ରେଣୀର ସଭ୍ୟ ରହି ପାରିବେ—ବ୍ୟକ୍ତିଗତ ଓ ଆନୁଷ୍ଠାନିକ । ପ୍ରତ୍ୟେକ ଶ୍ରେଣୀର ସଭ୍ୟ ନିଜ ଇଚ୍ଛା ଅନୁସାରେ ଆଜୀବନ କିମ୍ବା ବାର୍ଷିକ ସଭ୍ୟ ହୋଇ ପାରିବେ । ବର୍ତ୍ତମାନ ସୁଦ୍ଧା ମୋଟ ୧୮୮ ସଭ୍ୟଙ୍କ ମଧ୍ୟରୁ ୧୯ ଆଜୀବନ ଓ ୧୬୯ ବାର୍ଷିକ ସଭ୍ୟ ଅଟନ୍ତି । ଏଠାରେ ଲିପିବଦ୍ଧ ସୂଚନାମାନ ପ୍ରତ୍ୟେକ ସଭ୍ୟଙ୍କଠାରୁ ପାଇଥିବା ଆତ୍ମ – ପରିଚୟରୁ ସଂଗୃହୀତ । କୌଣସି ତ୍ରୁଟି ବିଚ୍ୟୁତି କେଉଁଠାରେ ପରିଲକ୍ଷିତ ହେଲେ ଓ ତାହା ଏକାଡ଼େମୀର ସଂଗଠନ ସମ୍ପାଦକଙ୍କ ଦୃଷ୍ଟିକୁ ଅଣାଗଲେ ପରବର୍ତ୍ତୀ ସଂସ୍କରଣରେ ସେଗୁଡ଼ିକର ସଂଶୋଧନ କରାଯିବ ।

## ଆଜୀବନ ସଭ୍ୟ

### ବ୍ୟକ୍ତିଗତ :

୧ । ବନମାଳୀ ବ୍ରହ୍ମଚାରୀ—ଜନ୍ମ ୧୮ । ୧୧ । ୧୯୦୫, ଠିକଣା—ଝାଞ୍ଜିରିମଙ୍ଗଳା, କଟକ ୯ । ଯୋଗ୍ୟତା—ନର୍ମାଲ ଟ୍ରେନିଂ । କୃତିତ୍ୱ—ଶିଶୁ କବିତା, ଗଳ୍ପ, ପ୍ରବନ୍ଧ ରଚନା । ହୁକେ 'ହୋ' (କେନ୍ଦ୍ର ସରକାର ପୁରସ୍କାର ପ୍ରାପ୍ତ), ବନର ମନ କଥା (ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ), ଭକ୍ତ ଓ ଭଗବାନ, ଗୁଣ ଦର୍ପଣ (ଦୁଇଖଣ୍ଡ), କିଏ କେମିତି, ଗୁରୁ ଚରିତ୍ର, ଚରିତ ଓ ଚରିତ୍ର ଆଦି ପୁସ୍ତକ ପ୍ରକାଶିତ ।

୨ । ବସନ୍ତ କୁମାର ନନ୍ଦ— ଠିକଣା— ସ୍ୱର୍ଗଦ୍ୱାର, ପୁରୀ । ଯୋଗ୍ୟତା—ଏଲ୍. ଏମ୍. ପି. (ଡାକ୍ତର) । କୃତିତ୍ୱ—ସହକାର ଓ ନବଭାରତରେ ବିଭିନ୍ନ ପ୍ରବନ୍ଧ ପ୍ରକାଶିତ । ବିଶ୍ୱ ସଂସ୍କୃତି ସଂସ୍ଥାନର ସଭ୍ୟ । ବହୁ ସମାଜ ସେବୀ ଅନୁଷ୍ଠାନ ସହ ସଂପୃକ୍ତ । ସ୍ୱାଧୀନତା ସଂଗ୍ରାମୀ ।

୩ । ରାମକୃଷ୍ଣ ନନ୍ଦ—ଜନ୍ମ ୧୫ । ୨ । ୧୯୦୬ । ଠିକଣା—ସଂସାର ପ୍ରେସ, ତଳ ତେଲଙ୍ଗା ବଜାର, କଟକ ୯ । ଯୋଗ୍ୟତା—ବି. ଏ., ଡ଼ି. ଲିଟ୍ । କୃତିତ୍ୱ—ଶିଶୁସାହିତ୍ୟ 'ଝୁମୁକା' (ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ), ଛଅଟି ଗଳ୍ପ ସିରିଜ୍‌ର ୭ ଖଣ୍ଡ ଗଳ୍ପ ବହି, ପ୍ରକୃତିର ଗଳ୍ପ-ପୁରୀ, ଡନକୁଷ୍ଟି, ବିଜ୍ଞାନର କୁହୁକ, ସଂଗ୍ରାମ ଓ ସାଧନା (ଦୁଇଖଣ୍ଡ), ତୁଳସୀ ଦାସ (ଜୀବନୀ), ଜୀବନ ତରଙ୍ଗ (ଆତ୍ମଜୀବନୀ), ବିଶ୍ୱପରିଚୟ (ଜ୍ଞାନକୋଷ)ର ପ୍ରଣେତା । ୧୦ଟି ପାଠ୍ୟପୁସ୍ତକର ରଚୟିତା । 'ସଂସାର' ପତ୍ରିକାର ସମ୍ପାଦକ । ବିଭିନ୍ନ ପତ୍ର ପତ୍ରିକାରେ ଶତାଧିକ ଲେଖା ପ୍ରକାଶିତ । ବିଭିନ୍ନ ପୁରସ୍କାର ବିଜେତା ଓ ଉପାୟନ ପ୍ରାପ୍ତ ।

୪ । ପ୍ରାଣବନ୍ଧୁ କର— ଜନ୍ମ ୧୯୧୪ ଡମପଡ଼ା । ଶିକ୍ଷା ବିଭାଗରେ ଶିକ୍ଷକ, ଅଧ୍ୟାପକ ଓ ଉପାଧ୍ୟକ୍ଷ ଭାବରେ କାର୍ଯ୍ୟ କରିଛନ୍ତି । ନାଟକ, କ୍ଷୁଦ୍ରଗଳ୍ପ ଓ ଏକାଙ୍କିକା ରଚନାରେ କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ସର୍ବଭାରତୀୟ ପ୍ରତିଯୋଗିତାରେ ତାଙ୍କର ଏକାଙ୍କିକା ପୁରସ୍କୃତ । ଓଡ଼ିଶା ସାହିତ୍ୟ ଏକାଡେମୀ ଓ ନାଟକ ଏକାଡେମୀ ଦ୍ୱାରା ଉପାୟନପ୍ରାପ୍ତ । ବହୁ ଏକାଙ୍କିକା, ନାଟକ ଓ କ୍ଷୁଦ୍ରଗଳ୍ପ ପୁସ୍ତକର ଲେଖକ ।

୫ । ବାମନଚରଣ ମିଶ୍ର—ଜନ୍ମ ୧।୭।୧୯୨୦ । ଠିକଣା— ବିମଳା ଭବନ, ନାଗେଶ୍ୱର ଟାଙ୍ଗୀ, ଭୁବନେଶ୍ୱର-୨ । ଯୋଗ୍ୟତା—ଏମ୍. ଏ., ଏମ୍. ଏଡ୍ । କୃତିତ୍ୱ— ବିଭିନ୍ନ ଶିଶୁ ଉପଯୋଗୀ ଲେଖାରେ ଅଭ୍ୟସ୍ତ । କ୍ଷୁଦ୍ର ଗଳ୍ପ, ନାଟକ, ଗୀତାଭିନୟ ଆଦି ୪୦ ଖଣ୍ଡ ପୁସ୍ତକ ପ୍ରକାଶିତ । ଆମ ପର୍ବପର୍ବାଣି, ଶିଶୁ ସଙ୍ଗୀତ ଓ ବହୁ ପାଠ୍ୟପୁସ୍ତକ ରଚୟିତା ।

୬ । ସୁଧାମଞ୍ଜରୀ ଦାସ–ଜନ୍ମ ୧୫ । ୧ । ୧୯୨୯ । ଯୋଗ୍ୟତା–ଏମ୍.ଏ ,ଡ଼ି.ଇଡ଼ି । ପାଞ୍ଚଜନ୍ୟ ପତ୍ରିକାରେ କବିତା ପ୍ରକାଶିତ । ଆକାଶବାଣୀ କାର୍ଯ୍ୟକ୍ରମରେ ଅଂଶଗ୍ରହଣ । ବର୍ତ୍ତମାନ ଠିକଣା–ପ୍ରଧାନ ଶିକ୍ଷୟିତ୍ରୀ, ଦୁଇନମ୍ବର ଉଚ୍ଚ ବାଳିକା ବିଦ୍ୟାଳୟ, ଭୁବନେଶ୍ୱର ୯ । ସ୍ଥାୟୀଠିକଣା–ପ୍ଲଟ ୧୪, ଅଶୋକ ନଗର, ଭୁବନେଶ୍ୱର ।

୭ । ରାମପ୍ରସାଦ ମହାନ୍ତି, ଜନ୍ମ ୧୯୨୬ । ପୁରୀଜିଲ୍ଲା ନିମାପଡ଼ା ଥାନା କନ୍ତିଲୋ ଗ୍ରାମରେ । ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଜେଲ ଯାଇଥିଲେ । "ମୋ ଦେଶ" ପତ୍ରିକାର ସଂପାଦକ । "ପ୍ରଜାତନ୍ତ୍ର"ରେ ଯୋଗଦେଇ ପ୍ରାୟ ୨୦ ବର୍ଷ ଧରି "ମୀନାବଜାର" ସଂପାଦନା କରିଥିଲେ "ଜହ୍ନରୀ ଭାଇ" ନାମରେ । ବହୁ ଶିଶୁ ପତ୍ରିକାରେ ତାଙ୍କର ଲେଖା ପ୍ରକାଶିତ । ବର୍ତ୍ତମାନ 'ଶିଶୁ ସାହିତ୍ୟ ସମିତି'ର ଓ 'ଶିଶୁଲେଖା'ର ସଂପାଦକ ।

୮ । ଜଗନ୍ନାଥ ମହାନ୍ତି–ଜନ୍ମ ୭ । ୧ । ୧୯୩୭ । ବର୍ତ୍ତମାନ ଠିକଣା–ରିଡ଼ର, ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଭୁବନେଶ୍ୱର । ସ୍ଥାୟୀ ଠିକଣା–ଗ୍ରାମ–ଜଙ୍ଗଲପୁରୀ, ପୋ: ଅ: ଗୋପ, ଜି: ପୁରୀ । ଯୋଗ୍ୟତା– ଏମ୍. ଏ., ଏମ୍. ଇଡ଼ି., ପିଏଚ୍. ଡ଼ି । କୃତିତ୍ୱ–ଏ ପର୍ଯ୍ୟନ୍ତ ଶିଶୁ ଓ କିଶୋର ସାହିତ୍ୟ ୩୦ଖଣ୍ଡ, ପ୍ରୌଢ଼ ସାହିତ୍ୟ ୧୦ ଖଣ୍ଡ, ସାହିତ୍ୟିକ ସମାଲୋଚନା ଓ ଶିକ୍ଷା ସାହିତ୍ୟରେ ଏବଂ ଇଂରାଜୀରେ ୮ ଖଣ୍ଡ ଶିକ୍ଷାଗ୍ରନ୍ଥ ପ୍ରକାଶିତ । ଜାତୀୟସ୍ତରରେ ଶିଶୁସାହିତ୍ୟ ପାଇଁ ୨ଥର, ପ୍ରୌଢ଼ ସାହିତ୍ୟ ପାଇଁ ୩ ଥର ପୁରସ୍କୃତ । ରାଜ୍ୟସ୍ତରରେ ଶିଶୁ ସାହିତ୍ୟ ପାଇଁ ୭ ଥର ପୁରସ୍କୃତ ଏବଂ ବିଷୁବ ମିଳନ ଉତ୍ସବରେ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଉପାୟନ ପ୍ରାପ୍ତ ।

୯ । ନରେନ୍ଦ୍ର ପ୍ରସାଦ ଦାସ–ଜନ୍ମ–୧୩।୧୦।୧୯୪୧ । ସ୍ଥାୟୀ ଠିକଣା– କଳକଳା, ଜିଲ୍ଲା କଟକ । ବର୍ତ୍ତମାନ ଠିକଣା–ରିଡ଼ର, ବିଜ୍ଞାନ ବିଭାଗ, ରାଜ୍ୟଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଭୁବନେଶ୍ୱର । ଯୋଗ୍ୟତା–ଏମ . ଏସ୍.ସି., ପିଏଚ୍.ଡ଼ି. । କୃତିତ୍ୱ–ଇଂରାଜୀ ଓ ଓଡ଼ିଆରେ ପ୍ରବନ୍ଧ, କବିତା, ଗଳ୍ପ ପ୍ରକାଶିତ । ଶିଶୁ ଉପଯୋଗୀ ୪୪ଟି ଆବିଷ୍କାର କଥା, ବୈଜ୍ଞାନିକ ପ୍ରବନ୍ଧ ଓ ଗଳ୍ପ ମୀନାବଜାର, ଶିଶୁଲେଖା, ପାରିଜାତ, ନନ୍ଦନକାନନ, ଦୈନିକ ସମାଜ, ପ୍ରଜାତନ୍ତ୍ର ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ । ପ୍ରାଣୀତତ୍ତ୍ୱରେ ଏକ ପାଠ୍ୟପୁସ୍ତକ ପ୍ରକାଶିତ । ଶିଶୁ ଓ କିଶୋର ଉପଯୋଗୀ ଦୁଇଟି ଲୋକପ୍ରିୟ ବିଜ୍ଞାନ ଭିତ୍ତିକ ପୁସ୍ତକ ପ୍ରକାଶୋନ୍ମୁଖୀ । ୧୯୬୬ ମସିହା ପ୍ରଜାତନ୍ତ୍ର ପ୍ରଚାରସମିତିର ବିଷୁବ ମିଳନରେ ଶିଶୁସାହିତ୍ୟ ପାଇଁ ସମ୍ମାନିତ ।

୧୦ । ରେଖାଦାସ- ଜନ୍ମ ୧୨ । ୭ । ୧୯୪୪ । ସ୍ଥାୟୀ ଠିକଣା–କଳକଳା, ଜି. କଟକ । ବର୍ତ୍ତମାନ ଠିକଣା–ପ୍ରାଣୀତତ୍ତ୍ୱ ବିଭାଗ, ବି. ଜେ. ବି. କଲେଜ, ଭୁବନେଶ୍ୱର । ଯୋଗ୍ୟତା–ଏମ୍. ଏସ୍.ସି. । କୃତିତ୍ୱ–ଇଂରାଜୀ ଓ ଓଡ଼ିଆରେ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ଶିଶୁ ଉପଯୋଗୀ ଅନେକ ବିଜ୍ଞାନ ସମ୍ବନ୍ଧୀୟ ଲେଖା ମୀନାବଜାର, ଶିଶୁଲେଖା, ପାରିଜାତ, ପ୍ରଜାତନ୍ତ୍ର ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ । ପ୍ରଜାତନ୍ତ୍ର ପ୍ରଚାର ସମିତିର ୧୯୭୨ ମସିହା ବିଷୁବ ମିଳନରେ ଶିଶୁସାହିତ୍ୟ ପାଇଁ ସମ୍ମାନିତା ।

୧୧ । ବୀରେନ୍ଦ୍ର କୁମାର ସାମନ୍ତରାୟ– ଜନ୍ମ ୧୧ । ୭ । ୧୯୪୬ । ଠିକଣା–ପାଳସାହି, ଭୟାରେଞ୍ଚ, ଜି. ପୁରୀ । ଯୋଗ୍ୟତା–ବି. ଏ. । କୃତିତ୍ୱ–ଶିଶୁ ଗଳ୍ପ, ପ୍ରବନ୍ଧାଦି ରଚନା । 'ପିଲଙ୍କ ଉହ୍ଲମଣି' ପୁସ୍ତକ ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ । 'ଟୁଲକୁ ମୂଷି' ଶିଶୁ ପତ୍ରିକା ଓ ଛାତ୍ରସାଥୀର ସମ୍ପାଦକ । ପିଲଙ୍କ ଲାଲ ବାହାଦୁର, ମୁଁ କେମିତି ପିଲା, କଥାଟିଏ କହୁଁ, ମୁଁ କ'ଣ ବୋକା, ପିଲଙ୍କ ବାପୁଜୀ ଆଦି ୨୯ ଖଣ୍ଡ ପୁସ୍ତକ ପ୍ରକାଶିତ । ବମ୍ବେରୁ ପ୍ରକାଶିତ ଇଂରାଜୀ 'ବାଲ୍ ବିହାର' ପତ୍ରିକାରେ 'ଫୋକ୍‌ଟେଲ୍‌ସ ଫ୍ରମ୍ ଓରିସା' ନାମରେ କେତୋଟି ଗଳ୍ପ ପ୍ରକାଶିତ ।

୧୨ । କୁମୁଦଲତା ମହାନ୍ତି–ଜନ୍ମ ୧୯୪୬ । ଗ୍ରାମ ଖୋର୍ଦ୍ଧା, ବର୍ତ୍ତମାନ ଠିକଣା–ସୁନାବେଡ଼ା ଏ. ଡ଼ି. ଏ. ଭି.

ହାଇସ୍କୁଲ, (ଶିକ୍ଷୟିତ୍ରୀ), ସୁନାବେଡ଼ା–୨, ଜି–କୋରାପୁଟ । ଯୋଗ୍ୟତା–ବି.ଏ, (ଡ଼ିଷ୍ଟିଙ୍କସନ୍) । କୃତିତ୍ୱ ଉପନ୍ୟାସ, କବିତା, ଶିଶୁ କବିତା, ନାଟକ ଆଦି ଲେଖନ୍ତି । 'ଫୁଲ ଓ ପରୀ' ପୁସ୍ତକ ପ୍ରକାଶିତ ।

୧୩ । ସୂର୍ଯ୍ୟମଣି ସାମନ୍ତରାୟ–ଜନ୍ମ ୧।୧୦।୧୯୪୬ । ସ୍ଥାୟୀ ଠିକଣା–ଶରଣକୁଳ, ଜି ପୁରୀ । ବର୍ତ୍ତମାନ– କ୍ଷେତ୍ର ବିଜ୍ଞାନ ବିଶେଷଜ୍ଞ, ଅତିରିକ୍ତ ଜିଲ୍ଲା କୃଷି ଅଫିସର, ଧର୍ମଶାଳା, ଜି କଟକ । ଯୋଗ୍ୟତା–ଏମ୍.ଏସ୍‌ସି, (ଏଜି) କୃତିତ୍ୱ–ବିଲୁଆନନା, ବାରମଜା, ଫୁଲଗୁଞ୍ଜି (ମାତୃଭୂମି ଶିଶୁବିଭାଗ) ଆଦିରେ କବିତା, ଗଳ୍ପ ଆଦି ପ୍ରକାଶିତ । କୁନିଗୀତ, କୁନାରାପ ପାଣ୍ଡୁଲିପି ପ୍ରକାଶ ଅପେକ୍ଷାରେ ।

୧୪ । ରାମଚନ୍ଦ୍ର ସେଠୀ–ଜନ୍ମ ୨୬।୧୨।୧୯୪୯ । ସ୍ଥାୟୀ ଠିକଣା–ବାଣପୁର ଓଡ଼ଗାଁ, ପୁରୀ । ବର୍ତ୍ତମାନ ଆଞ୍ଚଳିକ ମହାବିଦ୍ୟାଳୟ (ଅଧ୍ୟାପକ), ଭୁବନେଶ୍ୱର । ଯୋଗ୍ୟତା–ଏମ୍.ଏ.,ଏମ୍.ଏଡ଼ । କୃତିତ୍ୱ–ରାମଚରିତ ମାନସ, ସନେଟସ୍, ଅସ୍ତବନ୍ଧ, ବାଇଆରଜା, ଫୁଟିଆସୁଥିବା ଫୁଲରେ ପ୍ରଜାପତି ବସୁଥିବାର ମୁହୂର୍ତ୍ତ (ଏକାଙ୍କିକା), ମିରିଗନାଟ (ଶିଶୁ ଚଳଚ୍ଚିତ୍ର) ପ୍ରକାଶିତ । 'ପରିକ୍ରମା'ର ସଂପାଦକ ।

୧୫ । ମିଟୁ ବଡ଼ଜେନା–ଜନ୍ମ ୧୯୫୧ ମେଣ୍ଢଶାଳ, ଜି. ପୁରୀ । କବିତା ଓ ଗଳ୍ପ ରଚନାରେ ଦକ୍ଷତା ଦେଖାଇଛନ୍ତି । କେତେ ସାଧାରଣ ସେବା, ଶିକ୍ଷା ଓ ସାହିତ୍ୟ ଅନୁଷ୍ଠାନରେ ସଭ୍ୟ । ହୋଟେଲ 'ଅନାରକଲି'ର ପ୍ରତିଷ୍ଠାତା ।

୧୬ । ଉମେଶ ଚନ୍ଦ୍ର ସାହୁ–ଜନ୍ମ ୧୯୫୦ । ଠିକଣା ପୋ. ବକ୍ସ ନଂ ୧, କେନ୍ଦୁଝର ଗଡ଼, ଜି କେନ୍ଦୁଝର । ଯୋଗ୍ୟତା–ଆଇ.ଏସ୍‌ସି । ଡାକଟିକଟର କାହାଣୀ, ଗୋଲାପର କଣ୍ଟା ଇତ୍ୟାଦି ପୁସ୍ତକର ରଚୟିତା । ରୁଚି ଇଣ୍ଡରନାସନ୍‌ାଲ ଓ 'ଗୌରବ' ପତ୍ରିକାର ସଂପାଦନା ।

## ଆନୁଷ୍ଠାନିକ :

୧୭ । ନନ୍ଦନ କାନନ–ଲବ୍ଧପ୍ରତିଷ୍ଠ ମାସିକ ପାରି- ବାରିକ ପତ୍ରିକା 'ସୁଚରିତା'ର ଶିଶୁବିଭାଗଟି ବିଚ୍ଛିନ୍ନ ହୋଇ ଏକ ସ୍ୱୟଂସଂପୂର୍ଣ୍ଣ ଶିଶୁପତ୍ରିକାରୂପେ ଆତ୍ମପ୍ରକାଶ କରେ ୧୯୮୧ ନଭେମ୍ବର ୧୪ ତାରିଖରେ । ସଂପାଦନା ଓ ପରିଚାଳନା ଶ୍ରୀମତୀ ଶକୁନ୍ତଳା ପଣ୍ଡା ।

୧୮ । ଓଡ଼ିଶା ବୁକଷ୍ଟୋର–ପ୍ରତିଷ୍ଠାତା ଓ ପରିଚାଳକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ପାତ୍ର । ସାଧାରଣ ସାହିତ୍ୟ, ଶିଶୁ କିଶୋର ଓ ପ୍ରୌଢ଼ ସାହିତ୍ୟ ପ୍ରକାଶନରେ ସୁପରିଚିତ । ଅନେକ ଶିଶୁ ଓ ପ୍ରୌଢ଼ ସାହିତ୍ୟ ଜାତୀୟ ଓ ରାଜ୍ୟ ସ୍ତରରେ ପୁରସ୍କୃତ । 'ସାଧାରଣ ଜ୍ଞାନ' ପତ୍ରିକା ଛାତ୍ର- ସମାଜ ଉଦ୍ଦେଶ୍ୟରେ ପ୍ରକାଶିତ ।

୧୯ । ବିଦ୍ୟାପୁରୀ – ଅନୁଷ୍ଠାନଟି ୧୯୬୦–୬୧ରୁ ଜନ୍ମଲାଭ କରିଛି । ଶ୍ରୀ ପିତାମ୍ବର ମିଶ୍ର ତାର ପ୍ରତିଷ୍ଠାତା ଓ ପରିଚାଳକ । ସାଧାରଣ ସାହିତ୍ୟ, ଶିଶୁ ଓ କିଶୋର ସାହିତ୍ୟ ପ୍ରକାଶନରେ ସୁପରିଚିତ । ବିଭିନ୍ନ ବିଷୟରେ କଲେଜ ପାଠ୍ୟ ପୁସ୍ତକର ପ୍ରକାଶକ । ପ୍ରୌଢ଼, ଶିଶୁ ଓ କିଶୋର ସାହିତ୍ୟର କେତେକ ବହି ଜାତୀୟ ଓ ରାଜ୍ୟ ସ୍ତରରେ ପୁରସ୍କୃତ । କେତେକ ପୁସ୍ତକ ଆନ୍ତର୍ଜାତୀୟ ସ୍ତରରେ ମଧ୍ୟ ପରିଚିତ ।



